# ଭକ୍ତ-ମାର୍କଣ୍ଡେୟ

( ନାଟକ )



ପ୍ରଣେତା

ଶ୍ରୀ ଶ୍ରୀ ବ୍ରଜକିଶୋରଚନ୍ଦ୍ର ସିଂହଦେବ

ଯୁବରାଜ-ଧରାକୋଟ

୧୯୨୯



ଶ୍ରୀ ଶ୍ରୀ ବ୍ରଜକିଶୋରଚନ୍ଦ୍ର ସିଂହଦେବ

ଏଲ୍. ଏଚ୍. ଏମ୍. ଏ., ଯୁବରାଜ-ଧଷକୋଟ

# ଉତ୍ସର୍ଗ

ଶ୍ରୀ ଇଷ୍ଟଦେବଃ ପାତୁ

ଶ୍ରୀଳ ଶ୍ରୀଯୁକ୍ତ ଶ୍ରୀ ପିତୃଦେବ ପବିତ୍ର କରକମଳେଷୁ

ପୂଜ୍ୟପାଦ !

ଦୃଶ୍ୟ କାବ୍ୟର ରଚନାରେ ମୋହର ପଟୁତା ନଥିଲେ ସୁଦ୍ଧା ଶ୍ରୀମୁଖଙ୍କର ନିରନ୍ତର ଉତ୍ସାହ ଦ୍ୱାରା ଉତ୍ସାହିତ ହୋଇ ଭକ୍ତି ରସାତ୍ମକ ଏହି 'ଭକ୍ତ ମାର୍କଣ୍ଡେୟ' ନାମକ ନାଟକଟି ଲେଖିବାକୁ ସାହସୀ ହୋଇଅଛି । ଏହା ମୋହର ଦ୍ୱିତୀୟ ନାଟକ ଲେଖା ମାତ୍ର । ପାତ୍ର-ପାତ୍ରୀଙ୍କ ଚରିତ୍ର ଚିତ୍ରଣ, ସାଙ୍ଗୀତିକ ରଚନାଦ୍ୟ ଓ ଦୃଶ୍ୟମାନଙ୍କର ପୂର୍ବାପର ସଙ୍ଗତି ଉପରେ ଯଥେଷ୍ଟ ଦୃଷ୍ଟି ଦେଇଅଛି । କିନ୍ତୁ 'ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।' ଅତଏବ ଏହା ଯେ ଦୋଷ ଶୂନ୍ୟ ହେବ, ଏହା ମୁଁ କଦାଚ କହି ନପାରେ । ଆଜି ଶ୍ରୀମୁଖଙ୍କର ଏହି ପବିତ୍ର-ଜନ୍ମନକ୍ଷତ୍ର ଅବସରରେ ମୋହର ହୃଦୟର ଆଭ୍ୟନ୍ତରିକ ଭକ୍ତିର ସ୍ମାରକ ସଦୃଶ୍ୟ ଏହି ନାଟକଟି ଶ୍ରୀମୁଖଙ୍କର କର-ସରୋଜରେ ଅର୍ପଣ କଲି । ସାଦରେ ଗୃହୀତ ହେଲେ ଚରିତାର୍ଥ ହେବି ।

ଆଶ୍ୱିନ ଶୁକ୍ଳ ମହାଷ୍ଟମୀ
୧୦—୧୦—୨୯
ଧରାକୋଠ

ଶ୍ରୀମୁଖଙ୍କର ସ୍ନେହାଧୀନ ପୁତ୍ର
ବ୍ରଜକିଶୋରଚନ୍ଦ୍ର

# ପରିଚୟ



'ଭକ୍ତ ମାର୍କଣ୍ଡେୟ' ନାମକ ଏହି ଭକ୍ତିରସାତ୍ମକ ନାଟକଟି ପାଠକ ପାଠିକାମାନଙ୍କ ସମକ୍ଷରେ ଉପସ୍ଥାପିତ କରିବାକୁ ସାହସୀ ହେଲି। ମାର୍କଣ୍ଡେୟ, 'କାଶୀ'ର କ୍ରମଶଃ ମାତ୍ର।

ରାଜା ଦିବୋଦାସଙ୍କର କୁଳ ପୁରୋହିତ ମୃକଣ୍ଡୁ, ରାଣୀ ଲୀଳାବତୀଙ୍କ ଉପାସନା ବଳରେ ପ୍ରସ୍ତର ଲିଙ୍ଗରୁ ତ୍ରିମୂର୍ତ୍ତି ଓ ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି ତଥା ଦିବୋଦାସଙ୍କ ରୂପମାନ ଆବିର୍ଭାବ କରାଇବା ବିଷୟ ସମୂହ ପାଠକ ପାଠିକାଗଣ ଉପରୋକ୍ତ ମୋହର 'କାଶୀ' ନାମଧେୟ ନାଟକରୁ ଅବଗତ ହୋଇଥିବେ। ସେହି ଆଶ୍ଚର୍ଯ୍ୟ ଦୃଶ୍ୟ ଗୁଡ଼ିକ ଦେଖି ମୃକଣ୍ଡୁଙ୍କ ମନର ଅପୂର୍ବ ପରିବର୍ତ୍ତନ ଓ ପୁତ୍ରାର୍ଥେ ସେ ଶ୍ରୀ ବିଶ୍ୱନାଥଙ୍କ ନିକଟରେ ତପସ୍ୟା କରିବା ଓ ଅନ୍ୟାନ୍ୟ ବିଷୟ ସବୁ ଏହି ନାଟକରେ ପରିଲକ୍ଷିତ ହୋଇଅଛି। ନାଟକର ଭାଷା ସରଳ ଓ ସୁବୋଧ କରିବା ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କରିଅଛି।

ପାଠକ ପାଠିକାଗଣ ଶ୍ରମ ସ୍ୱୀକାର ପୂର୍ବକ ଏହାକୁ ଥରେ ଆମୂଳ ପାଠ କଲେ ଓ ଉତ୍କଳୀୟ ରଙ୍ଗମଞ୍ଚମାନଙ୍କରେ ଏହା ଆଦୃତ ହୋଇ ଅଭିନୟ କରାଗଲେ, ମୋହର ଶ୍ରମର ସାଫଲ୍ୟ ଉପଲବ୍ଧି କରିପାରିବି।

ଯେଉଁ ପଣ୍ଡିତଗଣ ଶ୍ରମସ୍ୱୀକାର କରି ଏହାର ପାଣ୍ଡୁଲିପି ସଂଶୋଧନ କରିଅଛନ୍ତି, ସେମାନଙ୍କଠାରେ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି। ଇତି।

ପରାକୋଟ—ରାଜବାଟୀ
୧୦।୧୦।୨୧

ଲେଖକ

# ନାଟ୍ୟୋଲ୍ଲିଖିତ ପାତ୍ରପାତ୍ରୀଗଣ

## ପୁରୁଷଗଣ

ଶଙ୍କର

ଯମ

ନାରଦ

ଶାରଦ

ମୃକଣ୍ଡୁ (ରାଜା ଦିବୋଦାସଙ୍କ କୁଳ ପୁରୋହିତ)

ମାର୍କଣ୍ଡେୟ (ମୃକଣ୍ଡୁଙ୍କ ପୁତ୍ର)

ମଦନ ଗୋପାଳ (ଜନୈକ କାଶୀ ଯାତ୍ରୀ)

ବନବାରୀ ଲାଲ୍ (ଜନୈକ କାଶୀ ବିଶ୍ୱନାଥଙ୍କ ପଣ୍ଡା)

ଅନ୍ୟାନ୍ୟ କାଶୀପଣ୍ଡାଗଣ

କର୍ପୂରଗନ୍ଧ (ମାର୍କଣ୍ଡେୟଙ୍କ ସହାଧ୍ୟାୟୀ)

ବୈକୁଣ୍ଠ ଦାସ ( ,, ,, )

ଶ୍ୟାମଲାଲ, ଚୁନିଲାଲ (ଚୋରଗଣ)

ଅନ୍ୟ ଜଣେ ଚୋର

ଯମଦୂତଗଣ

## ସ୍ତ୍ରୀଗଣ

ମୁରଂଧୃତା – (ମୃକଣ୍ଡୁଙ୍କ ପତ୍ନୀ)

ମାୟାବଳା – (ମୁରଂଧୃତା ବେଶଧାରିଣୀ ଜଣେ ସ୍ତ୍ରୀ)

ବାସନ୍ତୀ — (କାଶୀଯାତ୍ରୀ ମଦନଗୋପାଳର ସ୍ତ୍ରୀ)

ଡାକିନୀଗଣ, ଅଦୃଷ୍ଟକୁମାରୀଗଣ

— ॥୦॥ —



# ଭକ୍ତ-ମାର୍କଣ୍ଡେୟ



( ଦୁଇଜଣ ଅଦୃଷ୍ଟ କୁମାରୀଙ୍କ ଗାନ )



ଆହେ ପ୍ରଭୁ ଦୟାମୟ    ଜଗତର ପତି,
ତବ ଚରଣାରବିନ୍ଦେ    ଆମ୍ଭର ପ୍ରଣତି ହେ । ୧ ।
ଦିଅ ଦିବ୍ୟଜ୍ଞାନ ପ୍ରଭୁ    ଢ଼ାଳି କୃପାବାରି,
ଏ'ଘୋର-ସଂସାରୁ ପାରି    କର ଚକ୍ରଧାରୀ ହେ । ୨ ।
ଭକ୍ତ ପ୍ରହ୍ଲାଦ ଦୁଃଖ    ଜାଣି ଭବଗ୍ରାହୀ
ହିରଣ୍ୟକୁ ବଧାଇଲ    ହରି ରୂପ ବହି ହେ । ୩ ।
ଅପମାନ ପାଇ ଧ୍ରୁବ    ସ୍ମରି ତବନାମ,
ନିତ୍ୟ ସୁଖେ ରହିଅଛି    ଲଭି ଦିବ୍ୟଧାମ ହେ । ୪ ।
ଯାହାଙ୍କ ଏପରି ମହା    ମହିମା ଅଶେଷ,
ରକ୍ଷା କରନ୍ତୁ ଆମ୍ଭଙ୍କୁ    ସେହି ହୃଷିକେଶ ହେ । ୫ ।

( ଯଷ୍ଠ ପତନ )

ଭକ୍ତ ମାର୍କଣ୍ଡେୟ

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ



ରାଜପଥ

( ନାରଦ ଓ ଶାରଦଙ୍କ ପ୍ରବେଶ )

ନାରଦ— ଅହୋ ! ଆଜ ପବିତ୍ର କାଶୀବାସୀଙ୍କର କି ଆନନ୍ଦ ଉତ୍ସାହର ଦିବସ ! ଦିବୋଦାସର ମୃତ୍ୟୁ ହେବାରୁ ପ୍ରଭୁ ଭୋଳାନାଥ ମନ୍ଦରାଚଳ ତ୍ୟାଗ କରି ପୁନରାୟ ଦେବଦେବୀଙ୍କ ସହ ଏହି କ୍ଷେତ୍ରକୁ ଶୁଭାଗମନ କରିଅଛନ୍ତି ।

ଶାରଦ—ମହାମୁନେ, ପ୍ରଭୁ ତ୍ରିଲୋଚନ ସ୍ୱୟଂ ତ୍ରିମୂର୍ତ୍ତିମାନଙ୍କ ମଧ୍ୟରେ ସୃଷ୍ଟିର ପ୍ରଳୟକାରୀ ହେଲେ ସୁଦ୍ଧା ସତ୍ୟ ରକ୍ଷାରେ କି ତତ୍ପର ! ବ୍ରହ୍ମାଙ୍କ ଦିବୋଦାସକୁ ପ୍ରଦତ୍ତ ବରର ସାଫଲ୍ୟ ଜଗତରେ ବିଖ୍ୟାତ କରିବା ପାଇଁ ସେ' ନିଜେ ଦେବୀ ପାର୍ବତୀ ଓ ବିଘ୍ନରାଜ ଗଣେଶ ପ୍ରମୁଖ ଅନ୍ୟାନ୍ୟ ସହଚର ବୃନ୍ଦଙ୍କ ସହିତ ତାଙ୍କର ପ୍ରିୟସ୍ଥାନ କାଶୀକୁ ପରିତ୍ୟାଗ କରି ମନ୍ଦର ପର୍ବତରେ ବାସକଲେ ।

ନାରଦ—ଶାରଦ ମୁନେ, ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଜଗତରେ ସୃଷ୍ଟି ସ୍ଥିତି ଓ ପ୍ରଳୟକାରୀ ଅଟନ୍ତି । ଅର୍ଥାତ୍ ବ୍ରହ୍ମା ସ୍ରଷ୍ଟା, ବିଷ୍ଣୁ,

ସ୍ଥାପକ ଓ ଶିବ ପ୍ରଳୟକର୍ତ୍ତା ରୂପରେ ପୂଜିତ । ସତ୍ତ୍ୱ, ରଜ, ତମ ଏହି ତିନିଗୁଣ ମଧ୍ୟ ଏହି ମହାପୁରୁଷଙ୍କ ଠାରେ କ୍ରମାନ୍ୱୟରେ ସ୍ପଷ୍ଟ ଭାବରେ ବିଦ୍ୟମାନ । ଏହି କାରଣରୁ ବ୍ରହ୍ମାଙ୍କ ନିବେଦନ ରକ୍ଷା କରି ଶିବ ମନ୍ଦର ପର୍ବତୋପରି ନିବାସ କରିବାକୁ ସ୍ୱୟଂ ପର୍ବତକୁ ବର ପ୍ରଦାନ କଲେ । ତଦ୍ଦ୍ୱାରା ବ୍ରହ୍ମାଙ୍କ ବର ମଧ୍ୟ ସଫଳତା ଲଭିଲା ।

ଶାରଦ—ନାରଦ, ଏ'କଣ ଅନତିଦୂରରେ କେହି ଜଣେ ତପସ୍ୟାରେ ନିମଗ୍ନ ହେଲା ପରି ଦୃଶ୍ୟ ହେଉଅଛି ।

ନାରଦ—( ନିରୀକ୍ଷଣ କରି ) ହଁ, ରାଜା ଦିବୋଦାସଙ୍କ କୁଳ ପୁରୋହିତ ମୃକଣ୍ଡୁ ପୁତ୍ରାର୍ଥେ ଶ୍ରୀ ବିଶ୍ୱନାଥଙ୍କ ତପସ୍ୟାରେ ନିମଗ୍ନ ଅଛନ୍ତି ।

ଶାରଦ—ଚାଲନ୍ତୁ, ସ୍ୱର୍ଗାର୍ଦ୍ଧରେ ଥାଇ ଦେଖିବା, ଭୋଳାନାଥ ତାହାଙ୍କ ପ୍ରତି କେଉଁ ଆଦେଶ ଦେଉଅଛନ୍ତି ।

ନାରଦ—ହେଉ ତେବେ । (ଉଭୟଙ୍କ ପ୍ରସ୍ଥାନ)

( ପଟ୍ଟ ପରିବର୍ତ୍ତନ )



# ଦ୍ୱିତୀୟ ଦୃଶ୍ୟ

( ତପସ୍ୟା ଭୂମି )

( ତପସ୍ୟା ନିମଗ୍ନ ମୃକଣ୍ଡୁ )

ସ୍ତୁତି



ବାମାଙ୍ଗେ ଚ ବିଭାତି ଭୂଧର ସୁତା ଦେବାପଗା ମସ୍ତକେ
ଭାଲେ ବାଲବିଧୁର୍ଗଳେ ଚ ଗରଳଂ ଯସ୍ୟୋରସି ବ୍ୟାଳରାଟ୍
ସୋଽୟଂ ଭୂତି ବିଭୂଷଣଃ ସୁରବରଃ ସର୍ବାଧିପଃ ସର୍ବଦା
ଶର୍ବଃ ସର୍ବଗତଃ ଶିବଃ ଶଶିନିଭଃ ଶ୍ରୀ ଶଙ୍କରଃ ପାତୁମାମ୍ ।

ଶଙ୍କର--ବରଂବ୍ରୁହ, ବରଂବ୍ରୁହ, ବତ୍ସ ମୃକଣ୍ଡୁ, ଉଠ ଉଠ, ତୋହର ତପସ୍ୟାରେ ମୁଁ ଅତି ସନ୍ତୁଷ୍ଟ ହୋଇଅଛି । ଆଉ ଅଧିକ ତପସ୍ୟାର ଆବଶ୍ୟକତା ନାହିଁ, ମନୋବାଞ୍ଛିତ ବର ମାଗ ।

ମୃକଣ୍ଡୁ—( ସାଷ୍ଟାଙ୍ଗ ପ୍ରଣାମ ପୂର୍ବକ ) ପ୍ରଭୋ, ଦୟାସିନ୍ଧୋ; ଧନ୍ୟ ଆପଣଙ୍କ ଦୟା ! ଏ ଅଧମ ତବ ଦର୍ଶନାର୍ଥେ ବହୁକଷ୍ଟ ପ୍ରାପ୍ତ ହୋଇ ଆଜ ନିଜ ଜୀବନକୁ ସାର୍ଥକ ମନେ କରୁଅଛି । ( ଉଠିକରି )

## ଗୀତ



ଜୟ ଶିବ ଶଙ୍କର ଜୟ ଶିବ ଶଙ୍କର ଜୟ ଶିବ ଶଙ୍କର ବନ୍ଦେ,
ନିରବଧି-ନିର୍ଝକ ସାଧୁଜନ ଚିନ୍ତିତ ତବ ଚରଣ ଅରବିନ୍ଦେ ।

ଭସ୍ମ ବିଲେପିତ, ସର୍ପ ବିଭୂଷିତ ଅସ୍ଥି ବିମଣ୍ଡିତ ଗଳା,
ଡ଼ିବି ଡ଼ିବି ଡ଼ମରୁ ବାଦନ ଭୀଷଣ ଯୋଗ ବିଘୂର୍ଣ୍ଣିତ ଡ଼ୋଳା ।
ପରଜନ ନାଶନ ସଜ୍ଜନ ରକ୍ଷକ ଜୟ ଜୟ ଶଙ୍କର ପାହି,
ଜୟ ଜୟ ଶଙ୍କର ନିତ୍ୟ ଶୁଭଂକର ବଂ ବଂ ହର ହର ନାହି ।

ପ୍ରଭୋ ! ଦୀନ ବାନ୍ଧବ, ମୁଁ ଅପୁତ୍ରିକ ହୋଇ ଜଗତରେ ବହୁ-କଷ୍ଟ ଲଭୁଅଛି । ଏଣୁ, ଦୟାକରି ମୋତେ ପୁତ୍ର ଦାନ କରନ୍ତୁ ।

ଶଙ୍କର—ତଥାସ୍ତୁ, ତଥାସ୍ତୁ, ଭକ୍ତ ମୃକଣ୍ଡୁ, ତୁ ଘୋରତର ତପସ୍ୟା କରି ମୋହର ଚିତ୍ତ ରଞ୍ଜିତ କରିଅଛୁ । ଏଣୁ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇ ତୋର ମନ ବାଞ୍ଛିତ ବର ପ୍ରଦାନ କଲି । କିନ୍ତୁ ସେହି ସନ୍ତାନର ଆୟୁଃ କେବଳ ସପ୍ତବର୍ଷ ମାତ୍ର ହେବ ।

ମୃକଣ୍ଡୁ—ପ୍ରଭୁବର, ଉପକୃତ ହେଲି । ( ଚରଣ ତଳେ ପଡ଼ି ପ୍ରଣାମ କରିବା ଓ ଶଙ୍କର ଅଦୃଶ୍ୟ ହେବା ) (ସ୍ୱଗତ) ବର୍ତ୍ତମାନ୍ ପ୍ରଭୁ ଉମାପତିଙ୍କ ଅପାର କରୁଣାରୁ ମନୋବାଞ୍ଛିତ ବର ପାଇଲି । ଓହୋ ! ଶ୍ରୀ ବିଶ୍ୱନାଥଙ୍କ କି ପ୍ରଭାବ ! ଶଙ୍କର ଭଗବାନଙ୍କ କି ଦୟା ! ମୁଁ ଅଜ୍ଞାନ-ତମିରରେ ପଡ଼ି ସେହି ଭକ୍ତବତ୍ସଳ ଭଗବାନଙ୍କୁ ଚିହ୍ନି ନଥିଲି । ଏଣୁ ଏତେକାଳ ଯିନା ମୁଁ ପୁତ୍ରହୀନ । ତାହାଙ୍କର ଶ୍ରୀ ଚରଣାରବିନ୍ଦରେ ଭକ୍ତି ରଖିବା କାରଣରୁ ବର୍ତ୍ତମାନ ମୋର ପୁତ୍ର ଲଭିବା ବଳବତୀ ଆଶା ରହିଲା । ଜୟ ଶ୍ରୀ ବିଶ୍ୱନାଥଙ୍କ ଜୟ ।

( ପ୍ରସ୍ଥାନ ଓ ଯବନିକା ପତନ )

— ୦ —

# ଦ୍ୱିତୀୟ ଅଙ୍କ

## ୧ ମ ଦୃଶ୍ୟ

( ରାଜ ପଥ )

(ମଦନ ଗୋପାଳ ଓ ତାହାର ସ୍ତ୍ରୀ ବାସନ୍ତୀର ବିଶ୍ୱନାଥଙ୍କ ଦର୍ଶନ ସକାଶେ ଯିବା ଓ ମଦନ ଗୋପାଳ ନିଜ ବୋଝ ମୁଣ୍ଡରେ ଦେଇ ପ୍ରବେଶ)

ମଦନ— (ବୋଝ ଭୂମିରେ ଛେଚ ମଲିଗଲିରେ ବୋପା, ଏ ବୁଜୁଳା ବୋହି ବୋହି କରି । ଏ ମାଇକିନାଟାକୁ ଟିକିଏ ଧରିଦେ' ବୋଇଲେ ଟିକିଏ ଧରି ଦେଉ ନାହିଁ ମ । ( ସ୍ତ୍ରୀର ଅଡ଼େ ଚାହିଁ ) କିଏ ଦେଖୁଥିବ ପରା ମାଇପର ବୋଝ ବୋହୁଛି ।

ବାସନ୍ତୀ— ରାମ ବାପା, କେତେ ଦୂର ତ ଆସିଲେଣି । ହେଇଟି କାଶୀଟା ଦିଶୁଛି । ଆଉ ଟିକିଏ ଦୂର ନେଇ ପାରନ୍ତ ନାହିଁ ଯେ ଛେଚ ଦେଲ, ସଁ ହେଲାଣି । ବାଟରେ ଚୋର ହେରିକା ଥିବେ । ବେଗେ ଗଲେ ବିଶ୍ୱନାଥଙ୍କ ସଁ ଆଳତି ବେଳେ ମୁଣ୍ଡି ଆଣ୍ଠେ ମାରନ୍ତେ ନାହିଁ ?

ମଦନ— ହଁଲୋ, ଏ ବୋଝଟା ମୁଣ୍ଡାଇଥିଲେ ଜାଣନ୍ତୁ କି ସୁଖ ! (ଉଠି ଗମନୋଦ୍ୟତ ହେବା କାଳେ ବିଶ୍ୱନାଥଙ୍କ ପଣ୍ଡା ପ୍ରବେଶ)

ପଣ୍ଡା— ଯଜମାନ ଭୈୟା, ଆପ୍‌ହିଁ ଆପକା କଲ୍ୟାଣ ହୋ କଲ୍ୟାଣ ।

ମଦନ—(ସ୍ୱଗତ) ଏଇଟା କଏମ ଭୈୟା ମୈୟା କହୁଛି ।

ପଣ୍ଡା—ଯଜମାନ ଜିଇ ! ଆମ୍ଭେ ହେଉଛୁଁ ଶ୍ରୀ ଶ୍ରୀ ଶ୍ରୀ ବିଶ୍ୱନାଥଙ୍କ ପ୍ରସିଦ୍ଧ ପଣ୍ଡା - ସାକ୍ଷାତ ଧର୍ମକା ଝଣ୍ଡା । ବୁଝିଲୁ, କଣ ଦର୍ଶନକୁ ଯିବ ।

ମଦନ—ହଁ ଗୋସାଇଁ, ଦର୍ଶନ କରିବାକୁ ତ ଧାଇଁ ଆସିଛୁ ।

ପଣ୍ଡା—କାହିଁ କହିଲୁ, ତୋର ବାପ୍‌କା ନାମ, ଅଉର୍ ଗ୍ରାମ ।

ମଦନ - ମୋର ବାପର ନାମରେ ତୁମର କଣ ଅଛିକି ?

ପଣ୍ଡା—କାହିଁକିନା, ତୁ ନୂଆଁକର କାଶୀମେ ଆସିଛୁ—ସେଥିପାଇଁ ଆମ୍ଭେ ଜାଣିବାକୁ ହେବି ।

ମଦନ—ପଣ୍ଡା ଆପଣେ, ମୋର ତ କାଶୀ ଅସିବାର ଏ ଥରକ ନୁଆଁ । ଆଉ ମୋର ବାପା ଏଠାକୁ ଆସିଥିଲେ କି ନା ମୋତେ ଜଣା ନାହିଁ ।

ପଣ୍ଡା—ହେଉ ହେଉ ଜଣା ନାହିଁ ତ ନାହିଁ, ଆମର ସଙ୍ଗେ ଆସିଲେ କାଶୀ ଦର୍ଶନ କରାଇ ଦେବ ।

ମଦନ—ପଣ୍ଡା ଆପଣେ, ଜାଣିଲ ମୋ'ଠେ ପଇସା ଟୋଲିଟେ ନାହିଁ ଟି, ଆଉ ମୋତେ ସେଇଠେ ହରକତ କରବ ନାହିଁ ଟି ।

ପଣ୍ଡା—ନାହିଁ ବାବା, ବନବାସୀ ପଣ୍ଡା ଏ ସବୁ କଛ ନାହିଁ ଜାଣତା । ତୁମ୍ଭଙ୍କୁ ଧର୍ମକୁ ଦର୍ଶନ କରାଇ ଦେଗା ।

ମଦନ—(ବାସନ୍ତୀ ପ୍ରତି) ଆଲୋ ସମ ମା, ଏହାଙ୍କ ସାଥିରେ ଯିବା ନା, ଆଉ କାହାକୁ ପଣ୍ଡା କରିବା ?

ବାସନ୍ତୀ—ଏ ତ ଗୋଟେ ଅଲିଆଟେ ପରି ଦିଶୁଛି। ହଉ କଣ କହିବା, ଏଇଟେ ଆଉ କଣ ପଣ୍ଡା ନାହାନ୍ତି ?

ପଣ୍ଡା—ଆରେ ବାବା, ତୁ ଯିମିତି ତୁଣ୍ଡିକୁ ବୋଇଲେ ଅଭି ହଜାରେ ଆସି ହଜାର ହୋଇଗେ । ବ୍ରହ୍ମ ରକତ ତଳେ ପକାଇ ଦେବେ । ତୁ ସେ ପାପ୍‌କୁ ଶିର୍ ପର୍ ରଖୋଗେ ।

ମଦନ—କଣ କହିଲ ପାପ ମୁଣ୍ଡେଇବି—ପାପ ମୁଣ୍ଡେଇଲେ ମୁଣ୍ଡେଇବି ପଛକେ, ଅମେ ଦୁହେଁ କପଇ ସୁରୁଖୁରୁରେ ଦର୍ଶନ କରି ଲେଉଟି ଯାଉ । ଆମ ଉପରେ ଠେଙ୍ଗା ନପଡ଼ୁ ।

ପଣ୍ଡା—ଯଯମାନେ ! ତମର ତ କୋଛ୍ ହେବ ନାହିଁ—କିନ୍ତୁ ହାମାର ଜରୁର୍ ଠେଙ୍ଗା ଯୁଦ୍ଧ ଲଗିବ ।

ମଦନ—ଏ ବୋପା, ମୁଁ ତ ଏ ମହାଭାରତ ଯୁଦ୍ଧ ଦେଖି ପାରିବ ନାହିଁ, ଏତେବେଳୁ ମୋତେ ଡ଼ର ମାଡ଼ିଲାଣି । (ଭୟରେ କମ୍ପିତ ହେବା)

ବାସନ୍ତୀ—ଧିମ ବୋପା, ସେ ଗହଳରେ ମୋତେ ପାଖରୁ ଛାଡ଼ି ଦେବ ନାହିଁଟି !

ମଦନ—ଯା'ମ ! ନିଜ ରକ୍ଷଣ ଅସମ୍ଭବ, ଯେ କାହିଁ ପରକୁ ରଖିବ ? ମୋ କଥା ମୋତେ ସାଙ୍ଘାତିକ ହେବ । ଆଉ ମୁଁ ତତେ କୁଣ୍ଢେଇ କରି ଧରିଥିବ ।

ବାସନ୍ତୀ—ଅଉ ନାଇଁ ଯେ କଣ, ଘରେ ପାଇଣି ପଡ଼ିଲେ ଛିକକୁ ବାସନ୍ତୀ, ବାସନ୍ତୀ, ବାସନ୍ତୀ । ଏବେ ବିପତ୍ତି ପଡ଼ିଲେ ବାସନ୍ତୀକୁ କିଏ ପଚ୍ଚାରେ !

ମଦନ—( ସକ୍ରୋଧେ ) ଏଁ ଏଁ କଣ କହିଲୁ, ପଣ୍ଡାମାନେ କଣ ଯୁଦ୍ଧ ଲାଗିବେ ? ତୁ'ତ ମୋ ସାଙ୍ଗେ ଏତେ ବେଳୁ କଜିଆ କଲୁଣି ।

(ଅଉ କେତେକ ପଣ୍ଡାଙ୍କ ପ୍ରବେଶ)

ସମସ୍ତେ—( ଏକ ସ୍ୱରରେ ) ହାମାର ଯଯମାନ୍‌କା କଲ୍ୟାଣ ହୋ, କଲ୍ୟାଣ ହୋ ।

ପ୍ରଥମ ପଣ୍ଡା—(ମଦନ ଗୋପାଳ ନିକଟକୁ ଆସି) ଆପ୍‌କା ନାମ ?

ଦ୍ୱିତୀୟ ପଣ୍ଡା—ଆପ୍‌କା ବାପ୍‌କା ନାମ୍ ?

ତୃତୀୟ ପଣ୍ଡା—ଆପ୍‌କା ଗାଁମ୍‌କା ନାମ ?

ଚତୁର୍ଥ ପଣ୍ଡା—(ସମସ୍ତଙ୍କ ପ୍ରତି) ଆରେ ଚୁପ୍ ରହ । (ମଦନ ପ୍ରତି) ହେଇଟି ଦେଖିଲ ନା ଇଁହା ତମର ମା ବାପ୍‌କା ନାମ୍ ପଣ୍ଡାମାନଙ୍କ ଖାତାରେ ଥିବାର ଦେଖିଲୋ ନାହିଁ ତୋ, ତମର ପ୍ରାଣ ଏହି ଲଗେ ଯିବ ।

ମଦନ—ଆରେ ଭାଇ, ତମେ ପଣ୍ଡା ହେବାକୁ ଆସିଛ ନା, ମୋର ଜୀବନ ନେବାକୁ ଆସିଛ ? ମୋତେ ଇଆଡ଼େ ଟାଣୁଛ, ସିଆଡ଼େ ଟାଣୁଛ । କଣ ମୋର ବାପ ତମର ନିମକ ଖାଇ ଥିଲା ? ମୋତେ କାହାକୁ ଲୋଡ଼ା ନାହିଁ ଯ' ।

ପଣ୍ଡା – ( ଅନ୍ୟାନ୍ୟ ପଣ୍ଡାଙ୍କ ପ୍ରତି ) ଆରେ ଭାୟା, ଏ ତୋ ହାମାରେ ଯଯମାନ୍। ଆପ୍ ଲୋଗ୍ କାହେଁ ଆକର୍ ଇହାଁ ଧୂମ୍ ମଚ୍ଚତେ ହୋ ! ( ମଦନ ପ୍ରତି ) କଇ ହେ, ହାମ ତମର ପଣ୍ଡା ନାହିଁ ?

ମଦନ—( ଅନ୍ୟଙ୍କ ପ୍ରତି ) ହଁ ମୁଁ ତ ହ୍ୟାଙ୍କୁ ପଣ୍ଡା କରିଅଛି ।

ପ୍ରଥମ ପଣ୍ଡା—( ପୁସ୍ତକ ଦେଖାଇ ) ଆଉ ଏ ଖାତା ଦେଖିବ ନାହିଁ ? ଏଥିରେ ତୁମାର ବାପ୍‌କା ନାମ ଅଛି ।

ଦ୍ୱିତୀୟ ପଣ୍ଡା—(ପୁସ୍ତକ ଦେଖାଇ) ନାହିଁ ନାହିଁ ହେଇଟି ଦେଖ ତୁମାର ବାପାର ନାଁ, ମୋର ଖାତାମେ ହେଁ ।

ମଦନ—ଅରେ ଭାଇ, ମୋର ପ୍ରାଣ ଖାଇ ଦଅ ନାହିଁରେ ।

ପ୍ରଥମ ପଣ୍ଡା (ବାସନ୍ତୀର ହାତ ଟାଣି) ଭାଇ ଇଆଡ଼େ ଆସୋ, ମୁଁ ତମ ପାଇଁ ପାଞ୍ଚ ମହଲା ଘର ତୟାର କର ସବୁ ସାମାନ ରଖି ଅଛି । ଇନ୍‌କୋ ଛୁଡ଼ି ହାମାର ସାଥ୍ ଚଲ ।

ମଦନ—(ସକ୍ରୋଧେ) ଆରେ ସଳା, ତୁ କଏଁରେ ମୋର ମାଇକିନାର ହାତ ଧରିବାକୁ ? ତୁମ କାଶୀ ପଣ୍ଡାଙ୍କ ସ୍ୱଭାବ ମୁଁ ଭଲକରି ଜାଣେ । ଘାଟରେ ପୂଜା କଲା ପରି ବସିଥିବ—କେଣେ ଇଆଡ଼େ ସିଆଡ଼େ ଭଣ୍ଡୁଥିବ । ( ସ୍ତ୍ରୀ ପ୍ରତି ) ଚାଲ ମା ଇଆଡ଼େ ଆ । ମୁଁ କା' ଘରକୁ ଯିବ ନାହିଁ । ମୁଁ ଯାଇ ଗୋଟେ ଧର୍ମଶାଳାରେ ରହିବି । ( ଉଭୟଙ୍କ ଗମନ )

ପ୍ରଥମ ପଣ୍ଡା—(ଗତିରୋଧ କରି) ଆରେ ତୁ କାହାଁ ଯାଓଗେ ? ଧରମ-ଶାଲାକୁ ଗଲେ ପଇସା ଦେନେକୁ ନାହିଁ ପଡ଼େଗା ଇସ୍‌-ଲିଏ ଯାଉଛୁ । ଦେଖୋ, ତନ ସେଜରେ ତଡ଼ା ଖାଇବୁ ।

ମଦନ—ତଡ଼ା ହେଲେ ହେବ ତମର କଣ ଗଲା । ଚାଲ ବାହୁଡ଼ । (ସସ୍ତ୍ରୀକ ଗମନ କରିବା) ।

ପ୍ରଥମ ପଣ୍ଡା—(ସମସ୍ତଙ୍କ ପ୍ରତି) ବସ୍ ଅବ୍ ବୈଠକେ ଦେଖ୍‌ତେ ରହୋ ତୁମ୍‌କୋ ଫାଇଦା ନାହିଁ, କି କିସ୍‌କୋ ନାହିଁ (ତର୍ଜିତ ହେବେ କଣ୍ଠି ମୋଚନ) ଆଚ୍ଛା ଆଚ୍ଛା ଦେଖେଙ୍ଗେ (ସେପରି କରିବା) ହାମ୍ ଯବ୍ ଉନ୍‌କୋ ନାହିଁ ଲଭିଁ ହାମ୍ ଗାଧାକା ବାଚ୍ଚା । (କଣ୍ଠରେ ହାତ ଦେବା) ।

ଦ୍ୱିତୀୟ ପଣ୍ଡା—ଆଚ୍ଛାରେ ଢରକୋ ଲେଓଗେନା । ଦେଖେଙ୍ଗେ ଘାଟ୍‌ମେ ମଜା ନକାଲେଙ୍ଗେ ।

ତୃତୀୟ ପଣ୍ଡା—(କଣ୍ଠରେ ହାତ ଦେଇ) ହାଁ ହାଁ ଦେଖେଙ୍ଗେ ଘାଟ୍‌ମେ ନାହିଁ ତୋ ମନ୍ଦିରମେ ଦେଖେଙ୍ଗେ—କୈସା ନହିଁ ଅଯ୍ୟେଙ୍ଗେ । (ସମସ୍ତଙ୍କ ପ୍ରସ୍ଥାନ) ।

(ପଟ୍ଟ ପରିବର୍ତ୍ତନ)

---

## ଦ୍ୱିତୀୟ ଦୃଶ୍ୟ

(ମୃକଣ୍ଡୁଙ୍କ ଗୃହର ପାଠଶାଳା)

(ମାର୍କଣ୍ଡେୟ ପୁସ୍ତକ ହସ୍ତରେ ଧରି ପଢ଼ି ପଢ଼ି ପ୍ରବେଶ)

ମାର୍କଣ୍ଡେୟ—"ବିଦ୍ୟା ନାମ ନରସ୍ୟ ରୂପମଧିକଂ ପ୍ରଚ୍ଛନ୍ନ ଗୁପ୍ତମ୍ ଧନମ୍
ବିଦ୍ୟା ଭୋଗକରୀ ଯଶଃ ସୁଖକରୀ ବିଦ୍ୟା ଗୁରୂଣା ଗୁରୁଃ
ବିଦ୍ୟା ବନ୍ଧୁଜନେ, ବିଦେଶ ଗମନେ ବିଦ୍ୟାପରା ଦୈବତମ୍
ବିଦ୍ୟା ରାଜ ସୁପୂଜିତେ ନହିଧନଂ ବିଦ୍ୟା ବିହୀନେ ପଶୁଃ ।"

ଆହା ! କି ଉପଦେଶମୟ ଶ୍ଳୋକ ! ଧନ୍ୟ ଗୁରୁଦେବ, ଆପଣଙ୍କ ଉପଦେଶରୁ ବଳି ଏ ସଂସାରରେ ଆଉ କିଛି ବଡ଼ ବସ୍ତୁ ନାହିଁ । ଆପଣ ଯେଉଁ ସୁଲଭ ମାର୍ଗରେ ମୋତେ ସେ ଦିନ ଏ ଶ୍ଳୋକଟି ବୁଝାଇ ଦେଲେ, ତା' ମୋ ହୃଦୟରେ ସ୍ପଷ୍ଟ ଭାବରେ ଅଙ୍କିତ ହୋଇ ରହିଅଛି । ଆଚ୍ଛା, ଗୁରୁଙ୍କ ଆଜ୍ଞା ଅନୁଯାୟୀ ସେ ଶ୍ଳୋକଟି କଣ୍ଠସ୍ଥ କରିବି । ବ୍ୟର୍ଥ ସମୟ କଟାଇବା ଅନୁଚିତ । (ତଦ୍ରୂପ କରିବା)

(କର୍ପୂର ଓ ବୈକୁଣ୍ଠ ପ୍ରବେଶ)

କର୍ପୂର—ଭାଇ ବୈକୁଣ୍ଠ, ଦେଖୁଛୁ ନା ମାର୍କଣ୍ଡ ଦିନ ରାତି କପର ପୋଥିଟେ ଧରି ଭଡ଼ ଭଡ଼ ହେଉଛି ।

ବୈକୁଣ୍ଠ—ହଁ ଭାଇ କର୍ପୂର ତୁ ଠିକ୍ କହିଲୁ । ଆରେ ଆମେ ଖେଳି ବୁଲି ଆନନ୍ଦ କରିବା ନା ସବୁବେଳେ ପୋଥିଟେ ଧରି ଭଡ଼ ଭଡ଼ ହେଉଥିବା ।

କର୍ପୂର—ଭାଇ, ଜାଣିଲୁ ନା, କପର ହେଲେ ଆମେ ତାର ପୋଥିଟାକୁ ଛଡ଼େଇ ଘେନି ନେବା; ତୁ ତାର ଆଖିଟାକୁ ବୁଜି ଧରିବୁ, ମୁଁ ଛଡ଼େଇ ଘେନିଯିବି ।

ବୈକୁଣ୍ଠ—ହଁରେ ଭାଇ । ଚାଲେ ଘେନିଯିବା । (ଆଖି ବୁଜି ଧରିବା)

ମାର୍କଣ୍ଡେୟ—(ଆଖି ଖୋଲିବା ଚେଷ୍ଟା କରି) କିଏସେ—ବୈକୁଣ୍ଠ ନା କର୍ପୂରଗନ୍ଧ ?

କର୍ପୂର—( ହାତ ବାହାର କରେ ) ଆରେ କଣ ଦିନ ରାତ ପାଠ ପଢ଼ି ପଢ଼ି ପାଗଳ ହୋଇଯିବୁ ? ଯେତେବେଳେ ଦେଖିଲେ ଖାଲି ଭକ ଭକ—ଏଇଟା ଏକା ଲାଗିଛି ।

ଯେ ପଢ଼ିତବ୍ୟଂ ସୋମରିତବ୍ୟଂ
ନପଢ଼ିତବ୍ୟଂ ତମରିତବ୍ୟଂ
ଦନ୍ତ ଖଟମଟ କିଂ କରିତବ୍ୟଂ ।

ମାର୍କଣ୍ଡେୟ—କଣ, ତୁମ୍ଭେ ଗୁରୁଙ୍କ ମୁଖରୁ ଏ' ଉପଦେଶ ଶ୍ଳୋକଟି ଶୁଣି ନାହିଁ ?

(ଶ୍ଳୋକ) ଅଜରାମରବତ୍ ପ୍ରାଜ୍ଞଃ, ବିଦ୍ୟାମର୍ଥଂ ଚ ଚିନ୍ତୟେତ୍,
ଗୃହୀତ ଇବ କେଶେଷୁ ମୃତ୍ୟୁନା ଧର୍ମମାଚରେତ୍ ।

କର୍ପୂର—ଆରେ ଏ ସବୁ ଅମକୁତ କଣା । ଗୃହଶାଳୀରେ ଏ ଗୁଡ଼ାକ ରହିଥିବା ନା—ଘରେ, ମଧ୍ୟ ସେହି ରଟ ରଟ କରୁଥିବା ? ଘରେ କମିତ ହେଲେ ଟିକିଏ ଖେଳିଲେ ହେବ ସିନା—ଖାଲି ଭକ ଭକ ହେଉଥିବ ? ପାଠ ନ ଆସିଲେ ଗୁରୁ ଦଣ୍ଡ ଦେବେନା, ଆଉ କଣ କରିବେ ?

ବୈକୁଣ୍ଠ—ହିଁ, ନାହିଁ ଯେ କଣ ? ମା'ବାପର ଜୀବିତ କାଳେ ପିଲେ ଖେଳି ବୁଲି, ଖାଇ ପିଇ ସୁଖରେ ରହିବେ ସିନା-ତାପରେ କଣ ଆଉ କରି ପାରିବେ ?

( ମାଳିନ ବୃତ୍ତ )

ମାର୍କଣ୍ଡେୟ -- ଶୁଣ ମୋ ବିନୟ ବାଣୀ ନିଶ୍ଚଳେ ହୃଷ୍ଟଚିତ୍ତେ
ଶିଶୁ ସମୟ ବିଅର୍ଥେ ନ ନିଅ ଜାଣିଜାଣି ।
ବିଗତ ସମୟ କେବେ ଆସିବ ନାହିଁ ଆଉ
ଫେରଇ ନ ହେ ଯଥା ସେ ବାହିତ ଅମ୍ବୁରାଶି ।

ମିତ୍ର, ଆମ୍ଭେ ପାଠ ପଢ଼ିଲେ ସିନା ବାବୁ ମା'ଙ୍କ ବୁଢ଼ା କାଳକୁ କିଛି ସାହାଯ୍ୟ କରିବା । ଏଥିପାଇଁ ସେ ଏତେ କଷ୍ଟ ମୁଣ୍ଡାଇ ପଢ଼ାଉ ଅଛନ୍ତି । ସେ ସୁଯୋଗ ଛାଡ଼ି ଖେଳି ବୁଲିଲେ କଣ ମିଳିବ ?

କର୍ପୂର — ଆଚ୍ଛା କହିଲୁ, ବାପ ମା' ଯଦି ତାଙ୍କ ସୁଖ ପାଇଁ ପଢ଼ାଉ ଅଛନ୍ତି-ଖୁବ୍ ଭଲ କରୁ ଅଛନ୍ତି ।

ବୈକୁଣ୍ଠ — ହିଁ ଭାଇ ଦିନ ସାରା ଆମ୍ଭ ଖେଳରେ ବାଧା ଦେଉ ଅଛନ୍ତି, ପାଠ ପଢ଼ି ନଗଲେ ଗାଳି ଦେଉଛନ୍ତି । ତାଙ୍କର ଏ କ କଥା ମ । ପିଲା ହୋଇ ଟିକିଏ ଖେଳି ବୁଲିବ ନାହିଁ-ଆଉ କଣ କରିବ ମ ?

ମାର୍କଣ୍ଡେୟ -- ଓଃ, ତୁମ୍ଭେମାନେ ଗୁରୁଙ୍କ ଉପଦେଶରେ କିଛି ଦୃଷ୍ଟି ରଖି ନାହିଁ । ତାଙ୍କର ଅମୂଲ୍ୟ ଶିକ୍ଷାର ମୂଲ୍ୟ ଛାଡ଼ି ବସୁଛ ।

## ଗୀତ

( ନେନା ନେନା ସଖି, ଦ୍ରୁତ )

ପିତା ଗୁରୁ ବାଣୀ ନମାନିଲେ ଭାଇ
ବୃଥା ହୋଇବଟି ଏ ଜୀବନ

ପଛେ ଲୋଡ଼ିଲେତ ଆଉ ନପାଇବ
ଶାନ୍ତି ସୁଖମୟ ଜ୍ଞାନ ଧନ । (ପଦ)
ବେଳ ଥାଉ ଥାଉ ବାନ୍ଧ ଥିଲେ ବନ୍ଧ
ରହେ ତହିଁରେ ସିନା ଜୀବନ
ବହି ଗଲା ପରେ ଜଳ ପ୍ରବାହରେ
ସଂଯତ ହେଲେ କି ପ୍ରୟୋଜନ । ୧ ।
ଗୁରୁ ଜନ ଆଜ୍ଞା ନକରି ଅବଜ୍ଞା
ଭକତିରେ କର ତା'ପାଳନ,
ଜ୍ଞାନ ଅରଜିଲେ ଦୟା କରି ପ୍ରଭୁ
ବିତରିବେ ସୁଖ ଶାନ୍ତି ଧନ । ୨ ।

— ୫୦୫ —

( ମାର୍କଣ୍ଡେୟଙ୍କ ମା' ଭିତରୁ ଡ଼ାକିବା )

ମୁନି ଧୂର୍ତ୍ତ—ବାବୁ ମାର୍କଣ୍ଡେୟ ଖାଇବା ବେଳ ହେଲାଣି, ଆସେ ଖାଇ କରି ଯିବୁ ।

ମାର୍କଣ୍ଡେୟ—( ଅନ୍ୟ ବାଳକମାନଙ୍କ ପ୍ରତି ) ହେଇଟି, ମା' ଖାଇବାକୁ ଡ଼ାକିଲେଣି । ତୁମ ଲାଗି ମୁଁ ଆଜି କିଛି ପଢ଼ି ପାରିଲି ନାହିଁ । ଖାଲି ବୃଥାରେ ସମୟଟା କଟାଇ ଦେଲି ।

କର୍ପୂର ଓ ବୈକୁଣ୍ଠ—ହଁ ରେ, ଭାରି ସମୟ ନଷ୍ଟ କଲୁ । ବିଦ୍ୟାଟା ଭାରି ଧନ ପରା ! ତାହା ତୁ ପାଇଲୁ ନାହିଁ ।

ମାର୍କଣ୍ଡେୟ—ହଁ, ନିଶ୍ଚୟ, ବିଦ୍ୟା'ସବୁ ଧନଠାରୁ ବଡ଼ । ହଁ ଜାଣନାହିଁ ଗୁରୁ ସେ ଦିନ କହିଥିଲେ—

'ସର୍ବ ଦ୍ରବ୍ୟେଷୁ ବିଦ୍ୟୈବ ଦ୍ରବ୍ୟଂ ଆହୁରନୁତ୍ତମ,
ଅହାର୍ଯ୍ୟ ତ୍ୱାତ୍ ଅନର୍ଘ୍ୟ ତ୍ୱାତ୍ ଅକ୍ଷୟ୍ୟ ତ୍ୱାଚ ସର୍ବଦା ।'

କର୍ପୂର ଓ ବୈକୁଣ୍ଠ—ହେଉ ତେବେ, ସେ' ଧନକୁ ତୁ କୋଳରେ କୁଣ୍ଢେଇ ଧରି ଥା । ଆଜିଠୁ ତମ ଘରକୁ ଆମେ ଆସିବୁ ନାହିଁ-ଆଉ ତତେ କେବେ ହେଲେ ଆମ ସାଥିରେ ଖେଳାଇବୁ ନାହିଁ । (ସମସ୍ତେ ଗମନ କରିବା)

ମାର୍କଣ୍ଡେୟ—ହଁ ଭଲ କଥା ହେଉ ଯ' ।

( ମାତା ଅଭ୍ୟନ୍ତରରୁ ଡ଼ାକିବା )

ସୁରଂଧ୍ରୂତା—ବାବୁରେ, ଖାଇବାକୁ ଆସୁଛୁ ନା ନାହିଁ ?

ମାର୍କଣ୍ଡେୟ—ମା, ମୋର ଆଜିର ପଢ଼ା ଟିକା ବାକି ରହି ଯାଇଛି । କିଛି ପଢ଼ି ସାରିଲେ ଖାଇବାକୁ ଯିବି । (ସ୍ୱଗତ) କଣ କରିବି ଏ ଦୁଷ୍ଟ ପିଲାଙ୍କ ଲାଗି ମୋର ସମୟ ବ୍ୟର୍ଥ ହୋଇଗଲା, ଆଜି ଗୁରୁଙ୍କଠାରୁ ନିଶ୍ଚୟ ଦଣ୍ଡ ପାଇବି । (ପାଠ ପଢ଼ିବା)

( ଯବନିକା ପତନ )



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ



(ମୃକଣ୍ଡୁ ବିଷନ୍ନ ଚିତ୍ତରେ ପ୍ରବେଶ ଓ ମାର୍କଣ୍ଡେୟ ଉଭୟଙ୍କ ଅଜ୍ଞାତରେ ପୁସ୍ତକ ହସ୍ତେ ପ୍ରବେଶ ଓ ବସି ପଠନ କରିବା)

ମୃକଣ୍ଡୁ—( ଚକିତେ ସ୍ୱଗତ ) ପ୍ରଭୁ ହେ, ପଞ୍ଚବାଣ କର ଉପାସ୍ତ ତୁମ୍ଭର ହସ୍ତେ ।

ମୁରଂଧୂତ—ଦେବ, ଆଜ ଅନ୍ୟମନସ୍କ ଓ ଚିନ୍ତାଯୁକ୍ତ ପରି ଦେଖାଯାଉ ଅଛନ୍ତି । ଏଥିର କାରଣ ପ୍ରକାଶ କରନ୍ତୁ । ମୁଁ ବଡ଼ ସନ୍ଧିହାନ ହେଉଅଛି ।

ମୃକଣ୍ଡୁ—ମୁରଂଧୂତ, ଏ ପର୍ଯ୍ୟନ୍ତ ତୁମ୍ଭଙ୍କୁ ଦୁଃଖୀ ଭୟଙ୍କର ଦୁଃଖ ଗୋପନ କରିଅଛି । ଭୁଲ କଲି, ମୁଁ ଭାରି ଭୁଲ କଲି । ଶ୍ରୀ ଶଙ୍କର ଭଗବାନଙ୍କ ଠାରୁ ବର ପ୍ରାପ୍ତି ହେବା ମାତ୍ରେ ଆନନ୍ଦରେ ବିଭୋଳ ହୋଇ ମାର୍କଣ୍ଡେୟର ଆୟୁଷ ସାତ ବର୍ଷକୁ ସ୍ୱୀକାର କଲି । ବର୍ତ୍ତମାନ ସେହି ସପ୍ତ ବର୍ଷର ଅନ୍ତ କାଳ ଆସି ଉପସ୍ଥିତ । ହାୟ, ସେହି ସମୟ ମନେ ପଡ଼ିଲେ ହୃଦୟ ବିଦୀର୍ଣ୍ଣ ହୋଇଯାଏ ।

ମୁରଂଧୂତ—ଦେବ, ଏପରି ଭୟଙ୍କର ବର ସ୍ୱୀକାର କରି ଆପଣ ବଡ଼ ଅନର୍ଥ କରିଅଛନ୍ତି ।

ମୃକଣ୍ଡୁ—ଛି ସ୍ତ୍ରେ, କଣ କରବ ! ସନ୍ତାନହୀନ ହେବାରୁ ଶିବଙ୍କ ପ୍ରଦତ୍ତ ବରଦାନ ଶ୍ରବଣ ମାତ୍ରେ ଆନନ୍ଦରେ ଆତ୍ମବିସ୍ମୃତ ହୋଇ ଏ ଘୋର ଅକର୍ମ କରଅଛ । ବିଶ୍ୱାସ, ଯେ ପ୍ରଭୁ ବିଶ୍ୱନାଥ ମୋହର ବିନୟ ଗ୍ରହଣ କରି ନିଶ୍ଚୟ ମାର୍କଣ୍ଡେୟର ଆୟୁଷ ବୃଦ୍ଧି କରିଥାନ୍ତେ । ହାୟ ବିବେକକୁ ସନ୍ତୋଷ ସାଗରରେ ବୁଡ଼ାଇ ଦେଲି । (ବିଷଣ୍ଣରେ ରହିବା) ।

ମରୁଦ୍‌ଧ୍ୱଜା—(ସ୍ୱଗତ) ହାୟ ପ୍ରଭୁ, ଅନ୍ଧକୁ ଗୃହ ଧନ ମାତ୍ର ଲୋଚନ ସୁଖ ଅନୁଭବ କରାଇ ପୁନର୍ବାର ନେଇ ଯାଉଅଛ ।

## ଗୀତ

—o—

( ଯମୁନେ କହଗୋ ମୋର—ପ୍ରଭୃ )

ପ୍ରଭୁ ହେ, କାହିଁକି ଏତେ ଚିନ୍ତା ସାଗରେ ଦେଲ ଭସାଇ
ଦୟା କରି ମୋତେ ପରମ-ଆଶା-ନାବ ଆଗେ ବସାଇ ଦେଇ

ଅନ୍ଧକୁ ଯେପରି ନେତ୍ର ଅପୂର୍ବ ଜଗରେ ପୁନ
ଦେଇ ପୁଣି ଫେରାଇ ନେଉଅଛ, ଆହେ ପ୍ରଭୁ କିପାଇଁ ।
ଚିର କ୍ଷୁଧାର୍ତ୍ତିକୁ ଅନ୍ନ ପରଷି କେଉଁ କାରଣ
ଭୁଞ୍ଜିବା ବେଳେ ତା'ଠାରୁ ନେବ କି ହେ ବଳେ ଛଡ଼ାଇ,
ଅକର୍ମ-କରମଦାତା ତୁମ୍ଭେ ସବୁ ବିଶ୍ୱକର୍ତ୍ତା
ହେଲେ ଏବେ ସବୁ ହର୍ତ୍ତା ଆନକୁ କେ ରଖିପାରଇ ।

ପ୍ରଭୋ ! ଜଳ ଭଉଁରରେ ଘୂର୍ଣ୍ଣିତ ନୌକାର କର୍ଣ୍ଣଧାର ହୋଇ ସ୍ୱହସ୍ତରେ ସେହି ନାବକୁ ବୁଡ଼ାଇବ ! ଦୀନନାଥ, ଦୀନ ହୀନକୁ ଧନ ଦେଇ ପୁଣି ତାକୁ ନିର୍ଦ୍ଧନ କରିବ । ପୁତ୍ର ରୂପ ଜ୍ୟୋତିକ ଦେଇ ପୁଣି କଣ ମୋତେ ଅନ୍ଧାରରେ ନିମଗ୍ନ କରାଇବ । ଦୟାନିଧେ, ଯଦି ତୁମ୍ଭର ଏପରି ଇଚ୍ଛା ଥିଲା, ତାହା ହେଲେ ପୁତ୍ର ରତ୍ନ ମୋତେ ଦେଲ କାହିଁକି ?

ମୃକଣ୍ଡୁ—ପ୍ରିୟେ ସ୍ଥିର ହୁଅ, ସ୍ଥିର ହୁଅ, ଯାହା ଘଟିବାକୁ ଥିବ, ତାହା ନିଶ୍ଚୟ ଘଟିବ । ତୁମ୍ଭେ ଦୁଃଖରେ କାତର ହେଲେ ମୁଁକା ତାହା ରକ୍ଷି ପାରିବା ଅସମ୍ଭବ । ଏଣୁ ଶାସ୍ତ୍ରରେ କହିଛନ୍ତି କି, 'ଅବଶ୍ୟଂଭାବୀ ନୋ ଭାବା ଭବନ୍ତି ମହତା ପି' । ତୁମ୍ଭେ ଏପରି ଅସ୍ଥିର ହେଲେ, ଏହି ସମସ୍ୟା ମାର୍କଣ୍ଡେୟ ଜାଣି ପାରିବ ।

ମାର୍କଣ୍ଡେୟ—(ସ୍ୱଗତ) ସମସ୍ୟା କଣ ? ମୋ'ଠାରେ ପିତାଙ୍କ ଭେଦ-ଭାବ ? ପିତା କଣ ମୋହଠାରୁ କେଉଁ ବିଷୟ ଗୁପ୍ତରେ ରଖୁଛନ୍ତି !

(ପୁତ୍ରକୁ ଦେଖି ପିତା ମାତା ଆଶ୍ଚର୍ଯ୍ୟ ହେବା)

ମୃକଣ୍ଡୁ—ପ୍ରିୟେ, ଏହା ଆମ୍ଭର ଅତି ଭୁଲ ହେଲା । ମାର୍କଣ୍ଡେୟ ତ ଏଠାରେ ବସି ଅଧ୍ୟୟନ କରୁଅଛି । ବୋଧହୁଏ, ଶୁଣି ପାରିଥିବ । (ଧୀରେ ଧୀରେ କହିବା)

ମାର୍କଣ୍ଡେୟ—(ନିକଟକୁ ଆସି) ପିତା ପ୍ରଣାମ, ମାତା ପ୍ରଣାମ ।

ଉଭୟେ—କଲ୍ୟାଣ ବତ୍ସ, ତୋହର ମଙ୍ଗଳ ହେଉ ।

ମାର୍କଣ୍ଡେୟ—ପିତା, ଆପଣ ପୁତ୍ରଠାରୁ ଲୁଚାଇ ରଖିବା ଏପରି କି ବିଷୟ ଅଛି ? କୃପାକରି ମୋତେ ସବୁ ବିଷୟ ବୁଝାଇ ଦିଅନ୍ତୁ ।

ମୃକଣ୍ଡୁ—( ଶୋକରେ ସ୍ୱଗତ ) ହାୟ, ଯାହାକୁ ଏ ଗଭୀର ଦୁଃଖ ସମ୍ବାଦ ନକହିବାକୁ ମନସ୍ଥ କରିଥିଲି, ତାହାକୁ ସେହି ସମ୍ବାଦ ବିଦିତ ହୋଇଗଲା । ହାୟ ! କି ଉପାୟ କରିବି ? କେଉଁ ବାକ୍ୟରେ ଏହା ପୁତ୍ରକୁ କହିବି ?

ମରୁଦ୍ୱତୀ—ଓହୋ ! କି ଦୁଃସମୟ ଆସି ବର୍ତ୍ତମାନ ଉପସ୍ଥିତ । ପୁତ୍ରର ଏହି ପ୍ରଶ୍ନକୁ କି ଉତ୍ତର ଦେଇ ସନ୍ତୋଷ କରିବି !

ମାର୍କଣ୍ଡେୟ—(ସ୍ୱଗତ) ଆଶ୍ଚର୍ଯ୍ୟ, ଅତି ଆଶ୍ଚର୍ଯ୍ୟ । ମୋର ପିତା ମାତାଙ୍କ ଏପରି ଶୋକାନ୍ଧକାର କେଉଁ କାରଣରୁ ଘଟିଅଛି ! (ପ୍ରକାଶ୍ୟେ) ଜନକ ଜନନୀ, କେଉଁ କାରଣରୁ ଆପଣମାନେ ଶୋକରେ ଏତେ ବିହ୍ୱଳ ହୋଇ ଅଛନ୍ତି, ମୋତେ କହନ୍ତୁ । ଆପଣମାନଙ୍କର ଏ ଦୁଃଖ ଦୃଶ୍ୟ ଦେଖି ମୋ ମନରେ ଗଭୀର ଦୁଃଖ ଜନ୍ମୁଅଛି ।

ମୃକଣ୍ଡୁ—(ସ୍ୱଗତ) ପୁତ୍ରକୁ କେଉଁ ବାକ୍ୟରେ ତାହାର ମରଣ ବୃତ୍ତାନ୍ତ କହିବି ? (ପ୍ରକାଶ୍ୟେ) ବତ୍ସ, ଶୁଣ, ତୋହର ଏହି ଅଭାଗା ବାପ ସନ୍ତାନହୀନ ହେବାରୁ ଶଙ୍କରଙ୍କ ଠାରେ ଘୋର ତପସ୍ୟା କଲା । ଶ୍ରୀ ଶଙ୍କର ତପସ୍ୟାରେ ପ୍ରୀତ ହୋଇ ପୁତ୍ର ପ୍ରାପ୍ତି ସକାଶେ ବର ପ୍ରଦାନ କଲେ । ଆହୁରି ମଧ କହିଲେ "ମୃକଣ୍ଡୁ, ତୋହର ଭାଗ୍ୟରେ ପୁତ୍ର ଲାଭ ନାହିଁ । ମୋହରି

ଦୟାରେ ତୋତେ ପୁତ୍ର ପ୍ରାପ୍ତି ହେବ, କିନ୍ତୁ ସେ ବାଳକ ସପ୍ତ ବର୍ଷ ମାତ୍ର ଜୀବିତ ରହିବ ।” ବତ୍ସ, ବରଦାନ ଶୁଣିବା ମାତ୍ରେ ମୁଁ ଆନନ୍ଦରେ ଏପରି ପ୍ରମତ୍ତ ହୋଇ ପଡ଼ିଲି ଯେ, ତୋହର ଆୟୁଃର ବୃଦ୍ଧି ସକାଶେ ପ୍ରଭୁଙ୍କ ଠାରେ ପୁନଃ ଜିଜ୍ଞାସା ନକରି ପାରି ଏ ଘୋର କଷ୍ଟ ଲଭୁଅଛି । ମୋର ଜୀବନ ବରଂ ନରହିବା ଶ୍ରେୟସ୍କର ।

ମାର୍କଣ୍ଡେୟ—ହାୟ ପିତା, ମୋତେ ଏତେ ଦିନ ଯାଏଁ ଏ ବୃତ୍ତାନ୍ତ ନକହି ଉଚିତ କରି ନାହାନ୍ତି । ଆପଣ ବୃଥାରେ ମୋତେ ମୋହ ଜାଲରେ ପକାଇଲେ । ମା, ମୋତେ ଆପଣ ବାତ୍ସଲ୍ୟ-ପାଶରେ ଆବଦ୍ଧ କରି ଦୁଃଖରୂପୀ ସମୁଦ୍ରରେ ବୁଡ଼ାଇ ଦେଇଅଛ । ପିତଃ, ବର୍ତ୍ତମାନ ମୋର ଅନ୍ତିମ ସମୟ ଆସି ଉପସ୍ଥିତ । ଯେଉଁ ପ୍ରଭୁ ମୋତେ ନଶ୍ୱର ଜଗତରେ ଜାତ କରାଇ ଅଛନ୍ତି, ସେହି ପ୍ରଭୁଙ୍କ ପବିତ୍ର ଚରଣାରବିନ୍ଦରେ ଶେଷ ସମୟତକ କଟାଇବାକୁ ଅନୁମତି ଦିଅନ୍ତୁ । ସେହି ପବିତ୍ର ନାମ ସ୍ମରଣ କରି ଶେଷ ନିଶ୍ୱାସ ତ୍ୟାଗ କରିବି ।

ମୃକଣ୍ଡୁ—ପୁତ୍ର, ମନରେ ଏହା ବିଚାର କର ନାହିଁ । ତୋହର ସୁନ୍ଦର ମୁଖ-ମଣ୍ଡଳ ଦର୍ଶନ କରି ଆମ୍ଭର ହୃଦୟରୂପୀ ସମୁଦ୍ର ଆନନ୍ଦ ରୂପୀ ତରଙ୍ଗରେ ମାତି ଉଠୁଛି ।

ମାର୍କଣ୍ଡେୟ – ମାତା, ଆପଣ ସେ ବିଷୟରେ ବିଶେଷ ଚିନ୍ତିତ ହୁଅନ୍ତୁ ନାହିଁ । ପ୍ରଭୁ ପିନାକଧାରୀ ଆପଣଙ୍କ କଷ୍ଟ ବିମୋଚନ କରିବେ, ଅନ୍ତରେ ଆନନ୍ଦ ପ୍ରଦାନ କରିବେ ।

ମୃକଣ୍ଡୁ—ନାହିଁ ବତ୍ସ, ମୁଁ ତୋତେ କଦାପି ଛାଡ଼ି ପାରିବି ନାହିଁ । ତୁ ମୋର ନୟନର ପିତୁଳା, ଅନ୍ଧର ଲଉଡ଼ି, ଜୀବନର ସର୍ବସ୍ୱ । ତୋତେ ଛାଡ଼ି କପରି ରହିବି ?

ମାର୍କଣ୍ଡେୟ—ଆପଣ ପୁତ୍ର ସ୍ନେହରେ ପଡ଼ି ନିତାନ୍ତ ଭୁଲ କରିଅଛନ୍ତି । ମନୁଷ୍ୟ ଯେପରି ସ୍ୱପ୍ନଗତ ବିଷୟ ଗୁଡ଼ିକ ସତ୍ୟ ମନେ କରି ପୁନରାୟ ସୁଷୁପ୍ତି ଅବସ୍ଥାରେ ତାହା ଭୁଲିଯାଏ, ଆପଣ ସେପରି ସ୍ୱୟଂ ଜ୍ଞାନୀ ହୋଇ ଏ ଅନିତ୍ୟ ସଂସାର ମୋହରେ ପଡ଼ି ପ୍ରଭୁଙ୍କ ଚିନ୍ତା ଭୁଲି ଯାଇ ଅଛନ୍ତି । ଆପଣ ଏବେ ସାଂସାରିକ ମୋହରେ ଜଳାଞ୍ଜଳି ଦେଇ ମୋତେ ସେହି ଶଙ୍କରଙ୍କ ଆରାଧନାର୍ଥେ ଆଜ୍ଞା ଦିଅନ୍ତୁ ।

ମରୁଦ୍ୱତୀ—ବାବୁ, ତୁ ନିଜେ ଥରେ ବିଚାରି, ଏ ଅଧମ ପିତା ମାତା ତୋହ ବିନା କପରି କାଳଯାପନ କରିବେ ।

ମାର୍କଣ୍ଡେୟ—ପିତା ମାତା, ମୋହ ଆପଣମାନଙ୍କୁ କହିବା ଅନୁଚିତ ।

## ଗୀତ

୦ –

( ମନୁ ଯାଉ ନାହିଁ ମା—ଦୁତ )

କର ଚିନ୍ତା କାହିଁକି ମାତ, ଏଥି ପାଇଁ କି ?
ଉଦ୍ଧରିବେ ସଦାଶିବ ଏ ବିପତ୍ତିକି । (ପଦ)
ଭବି ହୃଦେ ବିଶ୍ୱର କଲ୍ୟାଣ    କଲେ ଯେ' ଗରଳ ପାନ
ଶିରେ ପୁଣି ବହିଛନ୍ତି    ଗଙ୍ଗା ଶଶିକି । ୧ ।

ସେବି ଯେଉଁ ଶଙ୍କର ଶ୍ରୀପଦ    ଲଭିଛ ସୁତ ସମ୍ପଦ
ସେହି ପ୍ରଭୁ ଚିରସୁଖ    ଦେବେ ନାହିଁ କି ? । ୨ ।
ଯାଉଛ ହେ ଜନକ ଜନନୀ,    ଫେରିବି କୁଟିଳେ ପୁଣି
କରୁଥିଅ ସୁକଲ୍ୟାଣ    ବନ୍ଧୁ ଶାନ୍ତିକ । ୩ ।

ମୃକଣ୍ଡୁ—ବତ୍ସ, ତୋହର ସାମାନ୍ୟ ଅନୁପସ୍ଥିତରେ ମୋହର ଗୃହ ଶୂନ୍ୟ ଦିଶେ । ବାପା, ତୁ କେବଳ ମୋ' କୁଳର ପ୍ରଦୀପ । ଏ ସବୁ ସମ୍ପତ୍ତି ତୋହର ଭୋଗ ସକାଶେ ରଖିଅଛୁ ।

ମାର୍କଣ୍ଡେୟ—ପିତା, ଆପଣଙ୍କ ଏ ବିଚାର ଉଚିତ ନୁହେଁ । କାରଣ, ସଂସାରର ସମସ୍ତ ବସ୍ତୁ ଅନିତ୍ୟ । କେହି ହେଲେ ଚିର ନୁହେଁ ।

ମୃକଣ୍ଡୁ—କପରି ? ଦେଖ, ଭୋଗରେ ତ ସୁଖ ଅଛି ।

ମାର୍କଣ୍ଡେୟ—ନାହିଁ ପିତଃ, ଭୋଗରେତ ରୋଗର ଭୟ ଅଛି ।

ମୃକଣ୍ଡୁ—ଆଉ କୁଳରେ ?

ମାର୍କଣ୍ଡେୟ—କଳଙ୍କର ।

ମୃକଣ୍ଡୁ—ଧନରେ ?

ମାର୍କଣ୍ଡେୟ—ଚୋର ଓ ରାଜାଙ୍କର ।

ମୃକଣ୍ଡୁ—ମାନ ମର୍ଯ୍ୟାଦାରେ ?

ମାର୍କଣ୍ଡେୟ—ଦରିଦ୍ରତାର ।

ମୃକଣ୍ଡୁ—ବଳରେ ?

ମାର୍କଣ୍ଡେୟ—ଶତ୍ରୁର ।

ମୃକଣ୍ଡୁ—ସୌନ୍ଦର୍ଯ୍ୟରେ ?

ମାର୍କଣ୍ଡେୟ–ବାର୍ଦ୍ଧକ୍ୟର ।

ମୃକଣ୍ଡୁ—ଶରୀରରେ ?

ମାର୍କଣ୍ଡେୟ – କୃତାନ୍ତର ।

ମୃକଣ୍ଡୁ—( ସ୍ୱଗତ ) ଓହୋ ପୁତ୍ରକୁ ତ କେଉଁ ଯୁକ୍ତିରେ ଜିଣି ପାରିଲି ନାହିଁ । ( ପ୍ରକଟେ ) କଣ, ସଂସାରର ପ୍ରତ୍ୟେକ ବସ୍ତୁଟିର କିଛି ନା କିଛି ଭୟ ଅଛି ?

ମାର୍କଣ୍ଡେୟ ଅବଶ୍ୟ, କିନ୍ତୁ ବୈରାଗ୍ୟରେ କାହାର କିଛି ଭୟ ନାହିଁ । ପିତା, ଆଉରି ଗୋଟିଏ କଥା ଶ୍ରବଣ କରନ୍ତୁ । ମନୁଷ୍ୟ ଏହି ଜୀବନରେ ଯାହା କିଛି ଧର୍ମ ସଞ୍ଚୟ କରି ରଖିଥାଏ, ତାହାର ଫଳ ପର ଜନ୍ମରେ ମିଳେ । ପିତା ମାତା ବା ଅନ୍ୟ କୌଣସି ବ୍ୟକ୍ତି କାହାରିକ ଧର୍ମରେ ବାପା ପରେ ସେ ଭାଗୀ ନୁହେ । ମୁଁ ଏ ପର୍ଯ୍ୟନ୍ତ କିଛି ସତ୍‌କାର୍ଯ୍ୟ କରିନାହିଁ । ଏଣୁ ପର ଜନ୍ମରେ ମୋ ସକାଶେ କିଛି ହେଲେ ସୁଖ ରହିବା ଆଶା ନାହିଁ । ପିତା ମାତା, ମୋତେ ଏବେ କ୍ଷମା କରନ୍ତୁ-ଯିବାକୁ ଅନୁମତି ଦିଅନ୍ତୁ । ଭଗବାନ ଶଙ୍କରଙ୍କର ଶରଣ ନନେବା ଯାଏଁ ମାର୍କଣ୍ଡେୟ ମନରେ ଶାନ୍ତି ନାହିଁ ।

ମୃକଣ୍ଡୁ—(ସ୍ତ୍ରୀପ୍ରତି) ପ୍ରିୟେ, ପୁତ୍ରର ଏ' ଉପଦେଶପୂର୍ଣ୍ଣ ବାକ୍ୟ ଶୁଣି ମୋ ମନରେ ଭିନ୍ନ ଭାବ ଜନ୍ମିଅଛି । ଅତଏବ ତୁମ୍ଭେ ପ୍ରତିବନ୍ଧ କର ନାହିଁ ।

ମରୁଦ୍ୱତୀ—ବାପ, ତୋହର ସୁଖରେ ମୋହର ସୁଖ—ତୁ' ମୋର ଗଳାର ହାର ।

ମାର୍କଣ୍ଡେୟ—ମାତଃ, ମୃତ୍ୟୁର କାଳ ମୁଁ ଜାଣି ପାରିବାରୁ ନିଜକୁ କୃତାର୍ଥ ମଣୁଛି । ନିଜ ମୃତ୍ୟୁକାଳ ଜାଣିବା ବ୍ୟକ୍ତି ଜଗତରେ ବିରଳ । ପିତା, ମୁଁ ବର୍ତ୍ତମାନ ସୁଦ୍ଧା ମୋହର କର୍ମଫଳକୁ ତପସ୍ୟା ଦ୍ୱାରା ବଦଳାଇ ପାରିବ ।

ମୃକଣ୍ଡୁ—ତେବେ ତୋହର କି ଇଚ୍ଛା ?

ମାର୍କଣ୍ଡେୟ—ପିତା, ମୋତେ ଯେଉଁ ଶଙ୍କର ଏ ଜଗତକୁ ପ୍ରେରଣ କରିଅଛନ୍ତି, ତାହାଙ୍କ ନିକଟରେ ତପସ୍ୟା କରି ବର ପ୍ରାର୍ଥୀ ହେବ । ମୋହର ଉଦ୍‌ଯୋଗ ନିଶ୍ଚୟ ଫଳରେ ପରିଣତ ହେବ ।

—o—

## ଗୀତ

(ଆଜି କି ମାତା ତୋହର ମୁହଁ – ପ୍ରଭୃତି)

ମନସ୍ୱିନୀ—ଆହା ବାବୁ, କାହିଁ ଯିବୁ    ଦୁଃଖିନୀ ମାତାକୁ ଛାଡ଼ିବୁ ।

ମାର୍କଣ୍ଡେୟ—ଯାଉଅଛି ଶିବ ସେବି    ହଦାୟୁ ଦିଅ ଆଜି ନଭବି ।

ମନସ୍ୱିନୀ—ଏ ବୟସେ ତୁ' କିପରି    ରହିବୁ ଧନ, ତପ ଆଚରି ।

ମାର୍କଣ୍ଡେୟ—ଗୋ ଜନନୀ, ନୁଅ ତୁନି ଆସିବି ବେଗେ ଆୟୁଷ ଘେନି ।

ମନସ୍ୱିନୀ—ବାପା, ତୋର ଶଙ୍କରଙ୍କ ଠାରେ ଯଦି ଏତେ ବିଶ୍ୱାସ, ତାହା ହେଲେ ଯାଅ ବାବୁ, ତାହାଙ୍କର ପବିତ୍ର ଚରଣାରବିନ୍ଦରେ ଭକ୍ତି ରଖ । ସେ ସର୍ବ ବ୍ୟାପକ, ତୋର ସର୍ବ

ମଙ୍ଗଳ ବିଧାନ କରିବେ । ତୋର ବାଞ୍ଛିତ ଫଳ ବିଧାନ କରିବେ । (ସ୍ୱାମୀ ପ୍ରତି) ଦେବ, ଆଉ ମାର୍କଣ୍ଡେୟଙ୍କର ଗତି-ରୋଧ କରିବା ଆମ୍ଭ ପକ୍ଷେ ଯଥାର୍ଥ ଅନୁଚିତ ।

ମୃକଣ୍ଡୁ—ଯାଅ ବାବୁ, ପ୍ରଭୁ ଭୋଳାନାଥଙ୍କୁ ସନ୍ତୁଷ୍ଟ କରାଇ ଅଭୀଷ୍ଟ ବର ଘେନି ଆସ । ତୁ ଆସିବା ଯାଏଁ ଏ ହତଭାଗ୍ୟ ପିତା ମାତା ଆଶା ପଥରେ ପଥିକ ହୋଇ ବସିଥିବେ ।

ମାର୍କଣ୍ଡେୟ—ମାତା ପିତା, ଆପଣଙ୍କ ଆଜ୍ଞାନୁସାରେ ମୋହର କର୍ତ୍ତବ୍ୟ ପାଳନ କରିବି । ଜୀବନର ଅନ୍ତିମ ମୁହୂର୍ତ୍ତ ଯାଏ ମନରେ ସେହି ଦେବ୍ୟ ମୂର୍ତ୍ତିଙ୍କୁ ଧାରଣ କରିବି । ଦୁଃଖରେ ଅଧୀର ହୁଅନ୍ତୁ ନାହିଁ । (ପ୍ରଣାମ ଓ ଗୀତ ଗାଇ ଗାଇ ପ୍ରସ୍ଥାନ)

—:୦:—

## ଗୀତ

(ପ୍ରେମମୟ ପ୍ରତିମାକୁ ମୋ ନୟନେ ନାଚୁଛି—ପ୍ରତି)

ପ୍ରାଣୀର ପରାଣ ପ୍ରଭୁ ହେ ଉମା ରମଣ,
ଅଭୟ ଚରଣେ ମୋତେ ଦିଅନ୍ତୁ ଶରଣ ।
ତେଜିଲିଣି ମୁହିଁ ଏବେ ଆଳୟର ସୁଖ,
ଭଜୁ ଅଛି ତବ ନାମ ରଖ ବା ନରଖ ।
ମୁହିଁ ଅଟଇ ବାଳକ ବିଶେଷେ ଅଜ୍ଞାନ
କରୁଅଛି ଅଶାଭରେ ଆତ୍ମ-ସମର୍ପଣ ।

( ଦୃଶ୍ୟ ପରିବର୍ତ୍ତନ )

—୦—

# ଦ୍ୱିତୀୟ ଦୃଶ୍ୟ



(ବନ ପଥେ ମାର୍କଣ୍ଡେୟ)

ମାର୍କଣ୍ଡେୟ—ଓହୋ ! ଏ ନବଦ୍ଧ ତାପସୀ ମନୋହାରୀ ଅରଣ୍ୟର ଶୋଭା କି ମନୋହର ! କେଉଁଠାରେ ଶ୍ୟାମାୟମାନ ନିବିଡ଼ ଲତା ଦ୍ରୁମାବଳୀ ଦିବାକରଙ୍କ ପ୍ରଚଣ୍ଡ ରଶ୍ମିକୁ ଅଟକାଇ ସୁଶୀତଳ ଛାୟାକୁ ସୃଷ୍ଟି କରୁଛି । କେଉଁଠାରେ ଆକାଶ ଭେଦୀ ମହୀଧ୍ର ସମୂହ ଦେଦୀପ୍ୟମାନ । କେଉଁଠାରେ ପାତାଳସ୍ପର୍ଶୀ ଅନନ୍ତ ଗହ୍ୱର, କେଉଁଠାରେ ଅବା ନିର୍ଝ-ରିଣୀ ଝର ଝର ଶବ୍ଦରେ ସାଗରାଭିମୁଖେ ପ୍ରଧାବିତ । ଓହୋ ! ଏହି କୁସୁମସମାକୁଳ ଲତିକାଗୁଡ଼ିକ କେଡ଼େ ମନୋହର ଦିଶୁ ଅଛନ୍ତି ! (ନେପଥ୍ୟେ ବ୍ୟାଘ୍ର ଭଲ୍ଲୁକଙ୍କ ଧ୍ୱନି ଓ ମାର୍କଣ୍ଡେୟ ହଠାତ୍ ଚମକି ପଡ଼ିବା) ଏ କି ଗଗନ-ଭେଦୀ ମେଘ ଗର୍ଜନ ସଦୃଶ୍ୟ ବ୍ୟାଘ୍ର ଭଲ୍ଲୁକାଦିଙ୍କ କରାଳ ଧ୍ୱନି । ଅଦୂରେ ଯେଉଁ ଦ୍ୱିତୀୟ କୃତାନ୍ତ ତୁଲ୍ୟ ଦୁଇ ଜଣ ବ୍ୟକ୍ତି ଏ' ଦିଗେ ଆସୁ ଅଛନ୍ତି; ଏ ଦୁହେଁ କିଏ ସେ ? (ଦୁଇ ଜଣ ଚୋରଙ୍କର ଅଳଙ୍କାରାଦି ଚୌର୍ଯ୍ୟ ଦ୍ରବ୍ୟ ସହ ଆଗମନ)

ଶ୍ୟାମଲାଲ୍—ଆରେ ଭାଇ ଚୁନି ! ଦେଖୋନା କିସେ ଆମେ ଲୁଟ କରେ ଅସଲ୍ ଅସଲ୍ ଚିଜ୍ ନେଇ ଆଙ୍ଗା । ଦେଖୋ ମୁଁ ବାହାଦୁ କାମ୍ କଲୋ । ଜାହା ଚିଜ୍ ମଇଁ ମିଲେଙ୍ଗେ ।

ଚୂନିଲାଲ - ବାଃ, ବାଃ, ଆରେ ଶ୍ୟାମ୍ ! ଏ ଲଡ଼କା ଦେଖୋ । ମୁଁ ନଥେ ତୁ କାହାଁ ପାଏଙ୍ଗାରେ । ଓ ଆଦ୍‌ମୀ ଜବ୍ ଲକଡ଼ି ନେଏକେ ଆଏଙ୍ଗା ମୁଁ କୈସି ତେରେ ବାଚାଙ୍ଗେରେ । ତୁ ସବ୍ ଭୁଲ୍ ଗୋଇ ।

ଶ୍ୟାମଲାଲ—ତୁ' ତ ତାରେ ଦେଖ୍‌ଲେ ଭଲି, ମିଛୁ ମିଛୁ କାହେ କହ୍ ତାରେ (ଉଭୟେ ବସି ଅଳଙ୍କାର ବାଣ୍ଟିବା ଓ ଶ୍ୟାମ୍ ବେଶି ନେବାର ଦେଖି)

ଚୂନିଲାଲ —(ସକ୍ରୋଧେ) ଆରେ ଉଲ୍ଲୁକେ ବାଛେ, ତୁ କାହାଁ ନେଇ ଯାଙ୍ଗାରେ । (ମାରିବାକୁ ଉଦ୍ୟତ ଓ ଅନ୍ୟଜଣେ ତସ୍କର ଦଉଡ଼ି ଆସି)

ତସ୍କର - ମିଲ୍ ଗେହେରେ ହାମ୍‌କୁ (ଅଳଙ୍କାର ବୁଜୁଳି ଧରି ଦୌଡ଼ି ବାହାରି ଯିବା)

ଉଭୟେ (ସଚକିତେ) କାହାଁ ଗେଅରେ, କାହାଁ ଗେଅରେ ଡାକଡ଼ୋ, ଡାକ୍‌ଡ଼ୋ (କହି ଦୌଡ଼ିବା ସମୟରେ ମାର୍କଣ୍ଡେୟଙ୍କୁ ଲତା-ମଣ୍ଡପରେ ଲୁଚିବାର ଦେଖି ତାଙ୍କୁ ଝିଙ୍କିବା)

ଚୂନିଲାଲ—କାହାଁ ଯାଏଙ୍ଗାରେ, ଗାଧାକା ବେଟେ—ଦେ, ଅମାର ଚିଜ୍ ଦେ—ନେତୋ ମଜା ଚଖାଦେଙ୍ଗେ । ( କହି ଛୁରୀ ବାହାର କରିବା)

ମାର୍କଣ୍ଡେୟ—ଓହୋ ! ଅଧମତାରଣ ଭୋଳାନାଥ ! ଏ କି ବିପତ୍ତି ! ରକ୍ଷା କର, ରକ୍ଷା କର । (ଚୋର ପ୍ରତି) ଆରେ ମୁଁ ତୁମ୍ଭର

ଜିନିସ ନେଇ ନାହିଁ । ମୋତେ କାହିଁକି ବୃଥା ଦଣ୍ଡ ଦେଉଛ ?

ଶ୍ୟାମଲାଲ—ଆରେ, ତେରେ ଭୋଲାନାଥ ଫୋଲାନାଥ ରଖୋ । ଏ'ସବୁ ହାମ୍‌କୁ ମାଲୁମ୍ ନାଇଁ ହୋଗା (କହି ମାର୍କଣ୍ଡେୟଙ୍କ ଦେହ ଖୋଜିବା)

ମାର୍କଣ୍ଡେୟ—ଆରେ ଭାଇ ମୋ'ଠାରେ କିଛି ନାହିଁରେ—ଖାଲି ମାଳ ଖଣ୍ଡେ ଅଛି । ନେବ ତ ନିଅ । ସେଥିରୁ ବା ତୁମ୍ଭେ କଣ ପାଇବ ? (ଉଭୟେ ମାର୍କଣ୍ଡେୟଙ୍କୁ ଝିଙ୍କି ମାଡ଼ ମାରିବା) (କ୍ରନ୍ଦନ ସ୍ୱରରେ) ପ୍ରଭୁ, ଏ କଷ୍ଟ ସହ୍ୟ ହେଉ ନାହିଁ । (ନେପଥ୍ୟ – ବ୍ୟାଘ୍ରର ଭୟଙ୍କର ଗର୍ଜନ)

ଚୋର—ଭାଗୋରେ, ଭାଗୋରେ ଜାନ୍ ବଚ୍‌କେ । (ପ୍ରସ୍ଥାନ)
(ବିପରୀତ ଦିଗରୁ ମୁଣ୍ଡମୁଣ୍ଡା ବେଶଧାରୀ ମାୟାବିନୀର ସହସ୍ତ ପ୍ରବେଶ)

ମାୟାବିନୀ—ଓହୋ ଆଜି ବାଘ ମୁହଁରୁ ବଞ୍ଚିଗଲି । ବାପା ମାର୍କଣ୍ଡେୟ, ତୋହର ବିଚ୍ଛେଦରେ ଏକ ଦିନ ଏକ ବର୍ଷ ତୁଲ୍ୟ ମନେ କରି ଅଭାଗିନୀ ତୋର ପଥ ଅନୁସରଣ କରି କରି ଆସି- ଅଛି । ପଥରେ ଗୋଟିଏ ଭୀଷଣ ବ୍ୟାଘ୍ରଠାରୁ ପ୍ରାଣ ରକ୍ଷା କରି ଆସିଲି ।

ମାର୍କଣ୍ଡେୟ—ମାତଃ, ଆପଣଙ୍କ ଏ'କି ମନର ପରିବର୍ତ୍ତନ ! ପ୍ରଭୁ ବିଶ୍ୱ- ନାଥଙ୍କ ଉପାସନା ନିମିତ୍ତ ଅନୁମତି ଦେଇ ପୁନର୍ବାର ଏ' ନିବିଡ଼ ଅରଣ୍ୟ ଭେଦ କରି ମୋ'ର ଅନୁଗାମିନୀ ହୋଇ ଅଛନ୍ତି । ଆପଣଙ୍କ ଏହା ଉଚିତ ନୁହେ, ମାତଃ ।

ମାୟାବଳୀ—ବାବୁ, ତୋହର ପଥ ଗୃହିଁ ଗୃହିଁ ବୃଦ୍ଧ ପିତା ଦୁଃଖରେ ଅନଶନ ବ୍ରତ କର ଅଛନ୍ତି । ଶୀଘ୍ର ଗୃହକୁ ଗୃଲ ।

ମାର୍କଣ୍ଡେୟ—ମାତଃ, ତାହା ମୋ ପକ୍ଷେ ଅସମ୍ଭବ । ଶ୍ରୀ ବଶ୍ୱନାଥଙ୍କୁ ଆରାଧନା କର ଅଭିଲାଷ ପୂର୍ଣ୍ଣ ନକରବା ଯାଏଁ ମାର୍କଣ୍ଡେୟ କଦାପି ଗୃହ ଦର୍ଶନ କରବ ନାହିଁ ।

ମାୟାବଳୀ—ତୁ ଗୃହକୁ ନଗଲେ ମୁଁ ଏ ଘୋର ଅରଣ୍ୟରେ ଭ୍ରମଣ କର କର ବନଚରେମାନଙ୍କ ପାରେ ଆତ୍ମ ସମର୍ପଣ କରବ, କନ୍ତୁ ଆଉ ଘରକୁ ଫେର ଯିବ ନାହିଁ ।

ମାର୍କଣ୍ଡେୟ—(ସ୍ୱଗତ) ମାତାଙ୍କର ଏ'କ ଉତ୍କଟ ସଙ୍କଳ୍ପ ! (ପ୍ରକାଶ୍ୟେ) ମାତଃ, ମତେ ଏ' ସତ୍‌ପଥରୁ ଭ୍ରଷ୍ଟ କଲେ ଆପଣଙ୍କ କ ମଙ୍ଗଳ ହେବ ? ଆଶୀର୍ବାଦ କରନ୍ତୁ -ନିର୍ବିଘ୍ନରେ ଯାଇ ପ୍ରଭୁ ବଶ୍ୱନାଥଙ୍କୁ ଦର୍ଶନ କରବ ଓ ମନୋରଥ ସିଦ୍ଧ କର ଲେଉଟିବ ।

ମାୟାବଳୀ—(ସ୍ୱଗତ) ମାର୍କଣ୍ଡେୟର କ ଦୃଢ଼ ସଙ୍କଳ୍ପ ! ମୁଁ ଯେତେ ଚେଷ୍ଟା କଲେ ସୁଦ୍ଧା ମୋହର ମାୟାଜାଲ ଭେଦ କର ପରୀକ୍ଷୋତ୍ତୀର୍ଣ୍ଣ ହୋଇଅଛ । ଏଥର ଫେରବା ଛଡ଼ା ଆଉ କଛ ଉପାୟ ନାହିଁ । ( ପ୍ରକାଶ୍ୟେ ) ବତ୍ସ ମାର୍କଣ୍ଡେୟ, ଦେଖିଲୁ ବନ ଡାକିନୀଗଣ କପର ଭୟାନକ ମୁଖବ୍ୟାଦାନ କର ଆମ୍ଭ ଆଡ଼କୁ ଆସୁ ଅଛନ୍ତି । (ମାର୍କଣ୍ଡେୟର ହାତ ଧର ଝିଙ୍କିବା ଚେଷ୍ଟା କର ନିଜେ ପ୍ରସ୍ଥାନ କରିବା)

ମାର୍କଣ୍ଡେୟ—ଓହୋ ! ଯଥାର୍ଥରେ ଏ'ତ ଭୟାନକ ଦୃଶ୍ୟ । ଭଗବାନ ଶଙ୍କର ! ମନରେ ଧୈର୍ଯ୍ୟ ଦେଇ ଏ ବିପତ୍ତିରୁ ଉଦ୍ଧାର

କର । ବର୍ତ୍ତମାନ ଶିବଙ୍କର ପବିତ୍ର ନାମ ଉଚ୍ଚାରଣ କରିବା ଉଚିତ । ଓଁ ନମଃ ଶିବାୟ, ଓଁ ନମଃ ଶିବାୟ । ( ବସି ମାଳ ଜପିବା, ଡ଼ାକିଣୀମାନେ ଚତୁର୍ଦ୍ଦିଗରେ କାଳକଳା ଧ୍ୱନି ଦେଇ ନାନାଦି ଭୟ ଦେଖାଇବା—ମାର୍କଣ୍ଡେୟ ସେମାନଙ୍କୁ ଭ୍ରୂକ୍ଷେପ ନକରିବା ଦେଖି ସେମାନଙ୍କ ଉଦ୍ଦେଶ୍ୟ ସାଧନର ବ୍ୟର୍ଥତା ସୂଚକ ଅଭିନୟ ଦେଖାଇ ପ୍ରସ୍ଥାନ) (କିଛିକ୍ଷଣ ଏଣେ ତେଣେ ଚାହିଁ ) ପ୍ରଭୁ ହେ, ଏ କି ଭୀଷଣ ପରୀକ୍ଷା ! ବର୍ତ୍ତମାନ ମୁଁ ବୁଝୁଅଛି, ମାତା ବେଶ ଧାରିଣୀ ସେ ସ୍ତ୍ରୀ ଜଣେ ମାୟାବିନୀ । ସେ କେତେ ପ୍ରକାର ବାତ୍ସଲ୍ୟ ସ୍ନେହ ପ୍ରଦର୍ଶାଇ ଗୃହକୁ ଲେଉଟାଇବା ନିମିତ୍ତ ଚେଷ୍ଟା କଲା । ତୁମ୍ଭେ ମୋହର ହୃଦୟରେ ଧୈର୍ଯ୍ୟ ନଦେଇଥିଲେ, ନିଶ୍ଚୟ ତାହାର ମାୟାଜାଲରେ ଆବଦ୍ଧ ହୋଇ ମୋହର ସଂକଳ୍ପ ଚୂର୍ଣ୍ଣ କରିଥାନ୍ତି । ଚୋରମାନଙ୍କ କି ଦୌରାତ୍ମ୍ୟ ! ପ୍ରଭୁ ହେ ! ସେଥିରୁ ମଧ୍ୟ ରକ୍ଷା କଲ । ପରକ୍ଷଣରେ ତୁମ୍ଭର କୃପାରେ ଭୟଙ୍କରୀ ବନ ଡ଼ାକିଣୀମାନଙ୍କର ତାଣ୍ଡବ ନୃତ୍ୟ ଦେଖି ମଧ୍ୟ ମୋତେ ଲବମାତ୍ର ଭୟ ସ୍ପର୍ଶ କରି ନାହିଁ । ଏଥି କାରଣରୁ ପଣ୍ଡିତମାନେ କହନ୍ତି 'ଶ୍ରେୟାଂସି ବହୁବିଘ୍ନାନି' ।

## ଗୀତ

( ଗଜଲ୍ ତିନ୍ ତାଲ୍ )

(ଝୁଠ ବୈଠେ ଆଜ ହାମ୍ ସେ—ପ୍ରଭୃ)

ହେ ପ୍ରଭୁ ଚନ୍ଦ୍ରଶେଖର
ଧନ୍ୟ ତୁମ୍ଭ ମହିମା,
ଅଘଟନ ଘଟନା ଅଟେ ତୁମ୍ଭର ରଚନା । (ଟେକ୍)

ପ୍ରାଣୀ ହିତେ କଲ ତୁମ୍ଭେ
ହଳାହଳ ସେବନ,
ଏଣୁ ତବ ଗ୍ରୀବା ଭାଗେ ଘୋଟିଅଛି ନୀଳିମା । ୧ ।
ଶୁକ ସନକାଦି ଜନେ
ସ୍ମର ତୁମ୍ଭର ନାମ,
ପୂର୍ଣ୍ଣ କରିଛନ୍ତି ଅବଢ଼ାଳେ ମନ କାମନା । ୨ ।
ଦିଅ ବିଭୁ ଦୀନ ଦାସେ,
ଦିବ୍ୟ ରୂପ ଦର୍ଶନ,
ଯାଉ ପ୍ରାଣୁଁ ଭବପାପ ବିଷାଦ ପ୍ରତାରଣା । ୩ ।
(ଗାଇ ଗାଇ ପ୍ରସ୍ଥାନ)

( ଦୃଶ୍ୟ ପରିବର୍ତ୍ତନ )

—୦—

## ତୃତୀୟ ଦୃଶ୍ୟ



( ଶିବ ମନ୍ଦିର )

(ତପସ୍ୟା ନିମଗ୍ନ ମାର୍କଣ୍ଡେୟ ଓ ଶିବଲିଙ୍ଗ ବିଦ୍ୟମାନ)

ମାର୍କଣ୍ଡେୟ—ତ୍ୱମେକମ୍ ଶରଣ୍ୟମ୍ ତ୍ୱମେକମ୍ ବରେଣ୍ୟମ
ତ୍ୱମେକମ୍ ଜଗତ୍ କାରଣମ୍ ବିଶ୍ୱରୂପମ୍
ତ୍ୱମେକମ୍ ଜଗତ୍ କର୍ତ୍ତୃପାତୃ ପ୍ରହର୍ତ୍ତୃମ
ତ୍ୱମେକମ୍ ପରମ ନିଶ୍ଚଳ ନିର୍ବିକଳ୍ପମ ।

(କତିପୟ ଯମଦୂତଙ୍କ ପ୍ରବେଶ)

ପ୍ରଥମ ଦୂତ—ଆରେ ଭାଇ, ଏ ଟୋକଟା ତ ଭାରି ଭିଡ଼ରେ ଶିବଙ୍କ ଆଗରେ ବସିଅଛି । ଏହି ତକ୍ଷଣେ ତାର ଭିଡ଼ ସବୁ ଭାଙ୍ଗି ଯିବ।

(ପ୍ରକାଶ୍ୟେ) ଆରେ ମାର୍କଣ୍ଡେୟ, ତୁ ସେଠାରୁ ଚାଲି ଶୀଘ୍ର ଏ'ଆଡ଼େ ଆସିଲୁ !

ମାର୍କଣ୍ଡେୟ—ଓଁ ନମଃ ଶିବାୟ ଓଁ ନମଃ ଶିବାୟ ।

ଦ୍ୱିତୀୟ ଦୂତ—ଆରେ ଶୀଘ୍ର ଆସୁ ନାହୁଁ କାହିଁକି ?

ମାର୍କଣ୍ଡେୟ—ଓଁ ନମଃ ଶିବାୟ, ଓଁ ନମଃ ଶିବାୟ ।

ପ୍ରଥମ ଦୂତ—(ଦ୍ୱିତୀୟ ପ୍ରତି) ଆରେ, ଏ'ତ ଆମ୍ଭର କଥା ଶୁଣୁନାହିଁ । ହାତରେ ଝିଙ୍କି ନଆଣିଲେ ଆସିବ ନାହିଁ ପରା ! (ଉଭୟେ ସ୍ପର୍ଶ କରିବା ମାତ୍ରେ ଅପୂର୍ବ ଐଶ୍ୱରିକ ଶକ୍ତି ଦ୍ୱାରା ବାଧା ହୋଇ ପତନୋନ୍ମୁଖ ଭାବେ ପଳାୟନ)

ମାର୍କଣ୍ଡେୟ— (ସ୍ତୁତି)

ପଶୂନାଂ ପତିଂ ପାପନାଶଂ ପରେଶଂ,
ଗଜେନ୍ଦ୍ରସ୍ୟ କୃତ୍ତିଂ ବସାନଂ ବରେଣ୍ୟଂ ।
ଜଟାଜୁଟ ମଧ୍ୟେ ସ୍ଫୁରଦ୍ ଗାଙ୍ଗବାରିଂ,
ମହାଦେବମେକଂ ସ୍ମରାମି ସ୍ମରାମି ।
ମହେଶଂ ସୁରେଶଂ ସୁରାରାତି ନାଶଂ,
ବିଭୁଂ ବିଶ୍ୱନାଥଂ ବିଭୂତ୍ୟଙ୍ଗଭୂଷଂ

ବିରୂପାକ୍ଷମିନ୍ଦ୍ୱର୍କ ଵହ୍ନି ତ୍ରିନେତ୍ରଂ
ସଦାନନ୍ଦ ମୀଡ଼େ ପ୍ରଭୁ ପଞ୍ଚବକ୍ତ୍ରଂ ।
ଗିରୀଶଂ ଗଣେଶଂ ଗଳେ ନୀଳବର୍ଣ୍ଣଂ,
ଗବେନ୍ଦ୍ରାଧିରୂଢ଼ଂ ଗୁଣାତୀତ ରୂପଂ ।
ଭବଂ ସାସ୍ୱରଂ ଭସ୍ମନା ଭୂଷିତାଙ୍ଗଂ,
ଭବାନୀ କଳତ୍ରଂ ଭଜେ ପଞ୍ଚବକ୍ତ୍ରଂ ।

(ଯମରାଜ ମହିଷ ବାହନରେ ପ୍ରବେଶ)

ଯମ—(ସ୍ୱଗତ) ଓହୋ ! ମାର୍କଣ୍ଡେୟ ସପ୍ତ ବର୍ଷର ବାଳକ ମାତ୍ର ହୋଇ କି କଠୋର ତପସ୍ୟାରେ ନିମଗ୍ନ ହୋଇଅଛି ! ଯେଉଁ କୃତାନ୍ତର ଦୂତକୁ ଜଗତରେ ଭୀତ ନହେବା ବ୍ୟକ୍ତି କେହି ହେଲେ ଦେଖା ନାହିଁ, ଆଜି ସେହି ଦୂତଗଣ ଏହି ସ୍ଥିର ବାଳକ ସମ୍ମୁଖରେ ପରାଙ୍ମୁଖ ହୋଇ ଯମପୁରକୁ ପ୍ରତ୍ୟାବର୍ତ୍ତନ କରି ଅଛନ୍ତି । ଏଥିପାଇଁ ଆଜି ନିଜେ ଯମରାଜ ଆସି ଏ ସ୍ଥଳରେ ଉପସ୍ଥିତ । ଆଚ୍ଛା ! ଦେଖିବା ଏହି ବାଳକକୁ କିଏ ରକ୍ଷି ପାରିବ ? ମୋହର କାଳପାଶକୁ ଫିଙ୍ଗି ଦେଖେ--କିପରି ନଆସିବ । (ମାର୍କଣ୍ଡେୟଙ୍କ ଗଳାକୁ ପାଶ ଫିଙ୍ଗିବା)

ମାର୍କଣ୍ଡେୟ—(ସଭୟେ) ମୋତେ କିଏସେ ଏଠାରୁ ଟାଣି ନେଉଅଛି ? (ଉଭୟ ହସ୍ତରେ ଶିବଲିଙ୍ଗକୁ ପୋଟାଳି ଧରିବା) ଓହୋ ମୋହର ହସ୍ତଦ୍ୱୟ ଭଗବାନଙ୍କ ଚରଣାରବିନ୍ଦରୁ କାହିଁକି କ୍ରମେ କ୍ରମେ ଛୁଡ଼ି ଯାଉଛି । ପ୍ରଭୁ, ମୋହର କେଉଁ ଦୋଷରୁ ଏହି ଦଣ୍ଡ ବିଧାନ କରୁଅଛନ୍ତି ? ହା ନାଥ !

ମୋର ପ୍ରାଣ ପିଣ୍ଡରୁ ବହିର୍ଗତ ହେଲା ପରି ଲାଗୁଛି । ତପସ୍ୟାର କୌଣସି ଲୋପ ହୋଇ ନାହିଁ ତ ? ନାଥ, ରକ୍ଷାକର—ରକ୍ଷା କର, ତବ ଚରଣ ସରୋଜରେ ଏ ଦାସ ଶରଣ ରହିଲା । ( ଯମରାଜା କ୍ରମେ ଜୋରରେ ପାଶକୁ ଝିଙ୍କିବା)

ଯମ—(ସ୍ୱଗତ) ବାଃ, ପାଶ ତ ଆଉ ଝିଙ୍କି ହେଉ ନାହିଁ । ଏତେ ବଳ ପ୍ରୟୋଗ ସତ୍ତ୍ୱେ ବାଳକ ଲବେ ହେଲେ ଘୁଞ୍ଚିବାର ଦେଖା ଯାଉ ନାହିଁ । ପାଶ ଦ୍ୱାରା ଯନ୍ତ୍ରଣା ପାଇ ମୂର୍ଖ ଲିଙ୍ଗକୁ ଭିଡ଼ି ଧରିଛି । (ପ୍ରକଟେ) ଆରେ ଅଧମ ବାଳକ, ତୋର କାଳ ଆସି ଉପସ୍ଥିତ ; ଶୀଘ୍ର ଛାଡ଼ି ଆସ ।

ମାର୍କଣ୍ଡେୟ—(ବିକଳ ସ୍ୱରରେ) ପ୍ରଭୋ ! ଭୋଳାନାଥ ! ଆଉ ସହି ପାରିବି ନାହିଁ । ପୀଡ଼ାରେ ଶରୀର କ୍ଷତ ବିକ୍ଷତ ହେଲାଣି । ଗିରିଜାପତେ, ରକ୍ଷାକର, ପ୍ରଭୋ ରକ୍ଷାକର । ଏହି ନିରାଶ୍ରୟ ବାଳକର ରକ୍ଷକ କେହି ନାହିଁ । ତୁମ୍ଭର ଦାସ ଆଜି ନିଃସହାୟ । ଜୟ ଜୟ ହର ଶଙ୍କର ଶମ୍ଭୋ, ଉମାପତି ମହାଦେବ ! ତ୍ରାହିମାଂ ପ୍ରଭୋ ତ୍ରାହିମାଂ (ଯମ ଜୋରରେ ପାଶ ଝିଙ୍କିବା ଓ ମାର୍କଣ୍ଡେୟ ଭିଡ଼ି ଧରିବା—ଭୀଷଣ ଶବ୍ଦ ହୋଇ ଶିବଙ୍କ ଆବିର୍ଭାବ)

ଶଙ୍କର - ରେ ଆତ୍ମାଭିମାନୀ, ମୋର ଭକ୍ତକୁ କଷ୍ଟ ଦେବାକୁ ତୁ କିଏସେ ? ତୋର କଣ କାଛ ହେଲେ ଭୟ ନାହିଁ । ରହ, ରହ, ଏହି କ୍ଷଣି ତୋହର ଔଦ୍ଧତ୍ୟର ଫଳ ଦେଖାଇବି । ( କ୍ରୋଧରେ ତ୍ରିଶୂଳ ଉତ୍ତୋଳନ କରିବା ) ସାବଧାନ !

ପ୍ରହାର କରୁଅଛ । ଏହି ତ୍ରିଶୂଳ ଦ୍ୱାରା ଏକା ଥରକେ ତୋତେ ସଂହାର କରିବ ।

( ଯମରାଜ ପାଶ ଛାଡ଼ି ସ୍ତୁତି କରିବା )

—○—

## ଗୀତ

(ଆରେ ବନମାଳି—ପ୍ରଭୃତି)

ଆହେ ଚନ୍ଦ୍ର ମୌଳି, କ୍ଷମାକର ଦୋଷ କୃପା କରି । ପଦ ।

ଅପରାଧ ମୋର କିଛି ନାହିଁ, ତବ ଆଦେଶକୁ ଶିରେ ବହି,
ସ୍ୱକୀୟ ଅର୍ଜିତ ପାପ ପୁଣ୍ୟ ଫଳେ ପ୍ରାଣୀଙ୍କୁ କାଳ ସଦା ନାଶଇ । ୧ ।
ନିୟତି କି ଆନ କରିବାର, କ୍ଷମତା ନାହିଁ ପ୍ରଭୁ କାହାର,
ଅଙ୍କିତ ହୋଇଛି ନିଜ ଲଲାଟରେ ସୁଖ ଦୁଃଖ ନିତି ଭୁଞ୍ଜିବାର । ୨ ।
ବିଭୁ ହେ ବୈଷ୍ଣବୀ ମାୟା ବଳେ, ଜୀବ ଆତଜାତ ଭୂମଣ୍ଡଳେ,
ଆୟୁଃ ଶେଷ ହେଲେ ମୋର ଅନୁଚରେ, ଆଣନ୍ତି ତାହାକୁ ମୃତ୍ୟୁପୁରେ ।

ପ୍ରଭୋ ! ମୋହର ଦୋଷ କ୍ଷମା କରନ୍ତୁ । ଆପଣଙ୍କ ଆଦେଶାନୁଯାୟୀ ମୋହର କର୍ତ୍ତବ୍ୟ ପାଳନରେ ତତ୍ପର ଅଛି । ସ୍ୱାମୀ ଯଦି ସ୍ୱୀକୃତ ନିୟମକୁ ଲଙ୍ଘନ କରିବାରେ ଉଦ୍ୟମୀ, ତାହାହେଲେ ମୁଁ ଏହିକ୍ଷଣି ଏହାକୁ ଛାଡ଼ି ଦେଉଅଛି ।

ଶଙ୍କର—ତେବେ କହନ୍ତି ଏହାର କେତେ ଦିନ ପରମାୟୁ ?

ଯମ—ପ୍ରଭୋ ! ସପ୍ତ ବର୍ଷ ମାତ୍ର ।

ଶଙ୍କର—କଣ ଆଜିହିଁ ମୋହର ସପ୍ତ ବର୍ଷ ହୋଇ ନାହିଁ ?

ଯମ— ଗିରିଜା ପତେ, ଆପଣଙ୍କ ସପ୍ତ ବର୍ଷ ତ ଅନେକ କାଳ ଅଛି ।

ଶଙ୍କର— ଅଛା, ତେବେ ଏହାର ପରମାୟୁ ମୋହର ବର୍ଷର ସପ୍ତବର୍ଷ ହେବ । ଏହା ମୋହର ଆଦେଶ ।

ଯମ— ପ୍ରଭୋ ! ଦୀନନାଥ, ଅପଣ ପର୍ବତକୁ ତୃଣ ଓ ତୃଣକୁ ପର୍ବତ କରି ପାରନ୍ତି । ସମଗ୍ର ଜଗତ ଆପଣଙ୍କ ଦ୍ୱାରା ଗୃଜିତ । ସେବକ ପକ୍ଷେ ଯେଉଁ ବାଧ୍ୟ ଆଜ୍ଞା ହେବ, ଅଧୀନ ଶିରୋ-ଧାର୍ଯ୍ୟ କରିବାକୁ ପ୍ରସ୍ତୁତ । ତବ ଆଜ୍ଞାନୁଯାୟୀ ମାର୍କଣ୍ଡେ-ୟଙ୍କ ସପ୍ତ ଶୈବ ବର୍ଷ ଆୟୁଷ ହେବ । ପ୍ରଭୋ ବିଦାୟ ହେଲି । ଏ' ଦାସଠାରେ ଦୟା ଥିବ ।( ପ୍ରଣାମ କରି ପ୍ରସ୍ଥାନ)

ଶଙ୍କର— ଭକ୍ତ ମାର୍କଣ୍ଡେୟ, ଉଠ, ଏତେ ଅସ୍ଥିର ହୁଅ ନାହିଁ ।

ମାର୍କଣ୍ଡେୟ—(ଲୁଠି ଚରଣରେ ପଡ଼ି) ପ୍ରଣାମ ଭକ୍ତବତ୍ସଳ, ପ୍ରଣାମ ।

ଶଙ୍କର— ଭକ୍ତ ମାର୍କଣ୍ଡେୟ, ମୁଁ ତୋହ ପ୍ରତି ଅତି ପ୍ରସନ୍ନ ହେଉଅଛି । ମୁଁ ତୋତେ ଏହି ବରଦାନ ଦେଉଅଛି କି, ଆଜ ଦିନଠାରୁ ଏହି ଲିଙ୍ଗ ମାର୍କଣ୍ଡେୟେଶ୍ୱର ନାମରେ ଜଗତରେ ବିଖ୍ୟାତ ହେବ ଓ ତୁ' ମୋହର ପରମ ଭକ୍ତ ହୋଇ ସପ୍ତ ବର୍ଷ ପର୍ଯ୍ୟନ୍ତ ଜୀବିତ ରହିବୁ । ପ୍ରଳୟ କାଳରେ ସୁଦ୍ଧା ତୋହର ବିନାଶ ହେବ ନାହିଁ ।

ମାର୍କଣ୍ଡେୟ— ଭକ୍ତବତ୍ସଳ, ଏ' ଭକ୍ତକୁ ଚରଣାରବିନ୍ଦରେ ବାସ ଦେଇ ଚରିତାର୍ଥ କରିବେ । ପ୍ରଭୋ ବିଦାୟ ।

## ଗୀତ

( ଶ୍ୟାମଲ ବଂଶୀବାଲା, ନନ୍ଦଲାଲ -ପ୍ରତ )

ଜୟ ଜୟ ହେ ତ୍ରିପୁରାରି, ଭସ୍ମଧାରୀ, ଶିବ ଗୌରୀ
ଏ ଭବରୁ କର ପାର । ପଦ ।

ପଙ୍କଜ ଚରଣେ ପାଇ ମୁଁ ଆଶ୍ରୟ,
ଧ୍ୱଂସ ହେଉ ମୋ' ପାପ ନିଚୟ ।
ଉଦ୍ଧର ରଖହେ, ଶ୍ରୀ ଦୟାମୟ,
ଢାଳ କରୁଣା ବାରି । ୧ ।
ବିଶ୍ୱ-ରୂପ ତବ ସନ୍ଦରଶନେ,
ଲଭି ନିତ୍ୟ ଶାନ୍ତି ପାନ-ଜୀବନେ
ଅନ୍ତେ ନିଅ ସନାତନ ଧାମେ,
ଦେନ ଏ' ଦୀନର ଗୁହାରି । ୨ ।

ସମାପ୍ତ



ଶ୍ରୀ ଶଶିଭୂଷଣ ରଥଙ୍କ ଦ୍ୱାରା ବ୍ରହ୍ମପୁର 'ଆଶା' ପ୍ରେସ୍‌ରେ ମୁଦ୍ରିତ